# ଭାରତୀୟ ନାଗ ସଂସ୍କୃତି

ଦୁର୍ଗାଚରଣ ପଣ୍ଡା



ଓିଶ୍ୱତର୍ଙ୍କେତ ସାରସ୍ୱତ ମଞ୍ଚ
ଭୁବନେଶ୍ୱର-୨

# ଭାରତୀୟ ନାଗ ସଂସ୍କୃତି


| | |
|---|---|
| ଲେଖକ | ଶ୍ରୀ ଦୁର୍ଗାଚରଣ ପଣ୍ଡା |
| ପ୍ରକାଶକ : | ଶ୍ୱେତସଙ୍କେତ ସାରସ୍ୱତ ମଞ୍ଚ, © |
| | ସାଇହୋମ, ବଶିଷ୍ଠ ନଗର, ଭୁବନେଶ୍ୱର-୨ |
| | ୯୩୩୭୧୦୭୩୧୧, ୦୬୭୪-୨୩୪୧୬୦୮ |
| ପ୍ରକାଶନ କାଳ | ୨୦୧୧ |
| ମୁଦ୍ରଣ | ଦିବ୍ୟ ମୁଦ୍ରଣୀ |
| | ପ୍ଲଟ୍ ନଂ. ୫୮/୬୦, ଦିବ୍ୟ ବିହାର, |
| | ଭୁବନେଶ୍ୱର, ଫୋନ୍ : ୦୬୭୪-୨୩୪୦୧୩୬ |
| ପ୍ରଚ୍ଛଦ | ବିଭୁ ପ୍ରସୂନ |
| ମୂଲ୍ୟ | ୫୦.୦୦ |


# Bharatiya Naga Samskruti


| | |
|---|---|
| By | **Sri Durga Charan Panda** |
| Published by | **Sweta Samketa Sarasvata Mancha ©** |
| | Sai Home, Basistha Nagar, Bhubaneswar-2 |
| | 9337107311, 0674-2341608 |
| Year | 2011 |
| Printed at | **Divya Mudrani** |
| | Plot No. 58/60, Divya Vihar |
| | Bhubaneswar, Ph : 0674-2340136 |
| Cover Design : | **Bibhu Prasuna** |
| Price | **50.00** |

# ମୁଖବନ୍ଧ

ଆମ ଧର୍ମ, କଳା ଓ ସଂସ୍କୃତିରେ ସର୍ପ ବା ନାଗର ଗଭୀର ପ୍ରଭାବ ରହିଛି । ତେବେ, ଚର୍ଚ୍ଚା ଅଭାବରୁ ଏହି ଗୁରୁତ୍ୱପୂର୍ଣ୍ଣ ବିଷୟଟି ଆମ ପାଖରେ ଗୌଣ ହୋଇପଡ଼ିଛି । କାଶ୍ମୀର ଓ ଦକ୍ଷିଣ ଭାରତ ଭଳି ଓଡ଼ିଶାରେ ନାଗ ପୂଜାର ବ୍ୟାପକତା ନଥିଲା ବେଳେ ଖ୍ରୀ.ପୂ. ୫ମ-୪ର୍ଥ ଶତାବ୍ଦୀ ଠାରୁ ଖ୍ରୀ. ୧୪ଶ ଶତାବ୍ଦୀ ଅର୍ଥାତ୍, ପ୍ରାୟ ୨୦୦୦ ବର୍ଷର ଉତ୍କଳର ନାଗ ମୂର୍ତ୍ତିକଳାର ଏକ କ୍ରମାନ୍ୱୟ ବଳିଷ୍ଠ ବିକାଶ ଧାରା ଦେଖିବାକୁ ମିଳେ । ଏହା ବ୍ୟତୀତ ଏଠାରେ କାଶ୍ୟପ, ନାଗ ଓ ନାଗେଶ ଗୋତ୍ରୀର ବହୁ ଲୋକ ରହିଛନ୍ତି । ଏଣୁ, ଏହି ମହାନ୍ ପରମ୍ପରା ସମ୍ପର୍କରେ ଆମେ ଜାଣିବା ଉଚିତ୍ ।

ସୁପରିଚିତ ଚିତ୍ରଶିଳ୍ପୀ, ତଥା କଳା ଓ ପ୍ରତ୍ନତତ୍ତ୍ୱର ଗବେଷକ ଶ୍ରୀଯୁକ୍ତ ଦୁର୍ଗାଚରଣ ପଣ୍ଡା ବହୁ ତଥ୍ୟ ସମ୍ବଳିତ ଏହି ସଚିତ୍ର ପୁସ୍ତକଟି ସାବଲୀଳ ଓ ସରଳ ଭାଷାରେ ସଂକ୍ଷିପ୍ତରେ ରଚନା କରିଛନ୍ତି । 'ଶ୍ୱେତସଙ୍କେତ ସାରସ୍ୱତ ମଞ୍ଚ' ସାହିତ୍ୟ ସହିତ କଳା ଓ ସଂସ୍କୃତି ଉପରେ କେତେକ ପୁସ୍ତକ ପ୍ରକାଶନ ନିମନ୍ତେ ଇଚ୍ଛୁକ । ଲେଖକ ଏହି ମଞ୍ଚକୁ ବହିଟିର ସମ୍ପୂର୍ଣ୍ଣ ପ୍ରକାଶନ ଭାର ଦେଇଥିବାରୁ ଅନୁଷ୍ଠାନ ତାଙ୍କ ଠାରେ କୃତଜ୍ଞ । ଆଶାକରୁ ସଂସ୍କୃତିପ୍ରେମୀ ପାଠକପାଠିକା ମହଲରେ ବହିଟି ଆଦୃତ ହେବ ।

ଦେବେନ୍ଦ୍ର ନାଥ ଦାଶ
ସମ୍ପାଦକ
ଶ୍ୱେତସଙ୍କେତ ସାରସ୍ୱତ ମଞ୍ଚ

# ବିଷୟ ସୂଚୀ



ଭଭଭ

# ବିଶ୍ୱ ସର୍ପ ସଂସ୍କୃତି :





ପ୍ରାଚୀନ ମିଶରୀୟ ରାଜବଂଶର ସଂକେତରେ ସର୍ପଚିତ୍ର

# ପ୍ରାଚୀନ ଭାରତ:



ମଧ୍ୟପ୍ରଦେଶ, ସାଞ୍ଚିସ୍ତୂପ ରେଲିଂବାଡରେ ଖୋଦିତ ମୂର୍ତ୍ତିକଳା। ଏଥିରେ ଜନୈକ ନାଗବଂଶୀ ରାଜା ନିଜ ରାଣୀମାନଙ୍କ ସହିତ ବୋଧିଦ୍ରୁମ ବା ବୃକ୍ଷପୂଜା କରୁଛନ୍ତି, ଆନୁମାନିକ ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀ



ମଧ୍ୟପ୍ରଦେଶ, ସାଞ୍ଚିସ୍ତୂପରେ ଖୋଦିତ ବର୍ଣ୍ଣନାତ୍ମକ ମୂର୍ତ୍ତିକଳାରେ ଭାରତର କୌଣସି ଏକ ନାଗ ମନ୍ଦିରକୁ ପୂଜାର୍ଚ୍ଚନା ନିମନ୍ତେ ଆସିଥିବା କେତେକ ବିଦେଶୀ (ଇରାନୀୟ ?) ତୀର୍ଥଯାତ୍ରୀ, ଆନୁମାନିକ ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀ।



# ନାଗ ସଂସ୍କୃତିର ପୃଷ୍ଠଭୂମି

ଭାରତ ସମେତ ପୃଥିବୀର ବହୁ ସଂସ୍କୃତିସମ୍ପନ୍ନ ଦେଶର ସମାଜ, ଧର୍ମଧାରଣା, କଳା ଓ ସାହିତ୍ୟରେ ସର୍ପ ସଂସ୍କୃତିର ମହତ୍ତ୍ୱପୂର୍ଣ୍ଣ ଭୂମିକା ଦେଖିବାକୁ ମିଳେ । ବନ ପର୍ବତରେ ବାସ କରୁଥିବା ଆଦିମାନବ ଅହରହ ସର୍ପମାନଙ୍କ ସଂସ୍ପର୍ଶରେ ଆସୁଥିଲା । ଅନେକ ସମୟରେ ସେମାନେ ସର୍ପଦଂଶନରେ ପ୍ରାଣ ହରାଉଥିଲେ । ଏଣୁ ସେମାନେ ତାହାକୁ ଏକ ଅଜୟ ତଥା ଭୟଙ୍କର ଶକ୍ତି ଭାବି ତାହାର ପୂଜା କରିବା ସହିତ ନିଜକୁ ବା ନିଜ ଗୋଷ୍ଠୀକୁ ସର୍ପଭଳି ଭୟଙ୍କର ଓ ଚତୁର ବୋଲି ପ୍ରତିଦ୍ୱନ୍ଦୀଙ୍କ ଆଗରେ ପରିଚୟ ପ୍ରଦାନ କରୁଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ସଚେତନ, ଜ୍ଞାନୀ ମନୁଷ୍ୟ ସର୍ପର ଅନ୍ତଃର୍ନିହିତ ଶକ୍ତି ଓ ଗୁଣର ପରିଚୟ ପାଇ ତାହାକୁ ଭକ୍ତିର ସହିତ ପୂଜା କଲା ଏବଂ ସର୍ପର ସୌନ୍ଦର୍ଯ୍ୟ ଓ ଛନ୍ଦମୟ ଭାବ ଭଙ୍ଗୀରେ ପ୍ରଭାବିତ ହୋଇ କଳା, ସ୍ଥାପତ୍ୟ ଓ ସାହିତ୍ୟରେ ତାହାର ପ୍ରତୀକାତ୍ମକ ଭାବ ପରିପ୍ରକାଶ କଲା । ଦେଖିବାକୁ ଗଲେ ଏହି ସର୍ପ ସଂସ୍କୃତିର କ୍ଷେତ୍ର ବହୁ ବ୍ୟାପକ । ତେବେ, ସୂଚନା ଓ ଆଲୋଚନା ନିମନ୍ତେ ସଂକ୍ଷିପ୍ତରେ ଏହାକୁ ପାଞ୍ଚ ଭାଗରେ ବିଭକ୍ତ କରାଯାଇପାରେ । ଯଥା, ସରୀସୃପ ସର୍ପ, ମଣିଷ ସମାଜରେ ସର୍ପ ଗୋଷ୍ଠୀ, ସର୍ପଦେବତା, କଳା, ସ୍ଥାପତ୍ୟ ଓ ସାହିତ୍ୟରେ ସର୍ପ । ତେବେ, ସଂସ୍କୃତି କ୍ଷେତ୍ରରେ ବିଷୟଗୁଡିକ ଏତେ ମାତ୍ରାରେ ମିଳିମିଶି ଯାଇଛି ଯେ, ଅନେକ ସ୍ଥଳେ ଏହାର ମୌଳିକ ଉପାଦାନଗୁଡିକୁ ଭିନ୍ନ ଭିନ୍ନ କରି ଚୟନ କରିବା କଷ୍ଟସାଧ ମନେହୁଏ ।

ଚିତ୍ର : ସାଞ୍ଚିର ପ୍ରାଚୀନ ବୌଦ୍ଧ କୀର୍ତ୍ତିରେ ଥିବା ନାଗଚିତ୍ର

ପ୍ରାଣୀତତ୍ତ୍ୱବିତ୍‌ଙ୍କ ମତରେ ପୃଥିବୀରେ ପ୍ରାୟ ୨୫୦୦ ପ୍ରକାର ସର୍ପ ରହିଛନ୍ତି । ସେମାନଙ୍କ ମଧ୍ୟରେ ତେଲିଆ ସାପ ସବୁଠାରୁ କ୍ଷୁଦ୍ରତମ, ଯାହାର ଲମ୍ବ ପ୍ରାୟ ୧୦ ସେ.ମି. ଓ ଅହିରାଜ ସର୍ପ ସବୁଠାରୁ ଲମ୍ବ ଯାହାକି ୫.୭୧ ମିଟର ପର୍ଯ୍ୟନ୍ତ ହୋଇପାରେ । ଏହା ବ୍ୟତୀତ ଆମେରିକାର ଆନାକୋଣ୍ଡା ନାମକ ସର୍ପ ସର୍ବାପେକ୍ଷା ଓଜନଦାର, ଯାହକି ପ୍ରାୟ ୨୨୭ କି.ଗ୍ରା. ପର୍ଯ୍ୟନ୍ତ ହୋଇଥାଏ । ଏହା ମଧ୍ୟରୁ ପ୍ରାୟ ୨୧୬ ପ୍ରକାର ସର୍ପ ଭାରତରେ ଦେଖାଯାଆନ୍ତି । କେବଳ କେତେକ ବିଷାକ୍ତ ସର୍ପ ଦଂଶନ କରୁଥିବାବେଳେ ଅନ୍ୟ ବହୁ ସର୍ପ ବିଷାକ୍ତ ନୁହଁନ୍ତି । ଏହା ମଧ୍ୟରେ ଅନେକ ସର୍ପ କାମୁଡିବା ସହିତ ନିଜ ଖାଦ୍ୟକୁ ଗିଳିଦିଅନ୍ତି । ସର୍ପମାନେ ଭୂମିତଳେ, ଜଳରେ ଏପରିକି ବୃକ୍ଷରେ ମଧ୍ୟ ରହିପାରନ୍ତି । ଏଣୁ ସଂସ୍କୃତ ଗ୍ରନ୍ଥମାନଙ୍କରେ ଏମାନଙ୍କୁ ପାତାଳ ସର୍ପ, ମର୍ତ୍ତ୍ୟ ସର୍ପ ଓ ସ୍ୱର୍ଗସର୍ପ ଭାବରେ ବିଦିତ କରାଯାଇଛି । କେତେକଙ୍କ ମତରେ ସର୍ପ ଶୁଣିପାରେ ନାହିଁ କିମ୍ବା ଚକ୍ଷୁରେ ଶୁଣେ । ଏଣୁ , ସେ ଚକ୍ଷୁଶ୍ରବା । ସର୍ପର ପାଦ ନାହିଁ,ଏଣୁ ସେ 'ଗୂଢପାଦ' । ସର୍ପ ଚକ୍ର ବା କୁଣ୍ଡଳାକାରରେ ଶୟନ କରେ, ଏଣୁ ସେ 'କୁଣ୍ଡଳୀ' । ଏହିପରି ସର୍ପର କେତେକ ଗୁଣାତ୍ମକ ନାମ ମଧ୍ୟ ରହିଛି । ସର୍ପମାନଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱର ସୂଚନା ଦେଇ ଶ୍ରୀମଦ୍ ଭାଗବତ ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି : 'ସର୍ପାଣାମସ୍ମି ବାସୁକିଃ, ଅନନ୍ତଶ୍ଚାସ୍ମି ନାଗାନାଂ' ଅର୍ଥାତ ସର୍ପରେ 'ବାସୁକି' ଏବଂ ନାଗରେ 'ଅନନ୍ତ' ଶ୍ରେଷ୍ଠ। ସର୍ପ ବହୁ ପ୍ରକାର ଥିବାବେଳେ ନାଗରେ ମଧ୍ୟ କେତେକ ପ୍ରଜାତି ରହିଛନ୍ତି । ନାଗ ସର୍ବାପେକ୍ଷା ଉଗ୍ର ଏବଂ ତାର ବିଷ ଅତ୍ୟନ୍ତ ତୀବ୍ର । ଏମାନେ ଭୟଙ୍କର ହେଲେହେଁ ମନୁଷ୍ୟର ମନ୍ତ୍ରଶକ୍ତିରେ ବଶୀଭୂତ ହୋଇଥାଆନ୍ତି । ଅନେକ ନାଗ 'ନାଗେଶ୍ୱର'ର ମଧୁର ସ୍ୱରରେ ଖେଳିଥାଆନ୍ତି । ଚମ୍ପକ ଓ ମଲ୍ଲୀ ଭଳି ସୁଗନ୍ଧିତ ପୁଷ୍ପର ବାସରେ ଆକର୍ଷିତ ହୁଅନ୍ତି । ଏଣୁ ସଂସ୍କୃତି କ୍ଷେତ୍ରରେ 'ନାଗ' ଶବ୍ଦକୁ ଅଧିକ ଗୁରୁତ୍ୱ ଦିଆଯାଇଥାଏ, ଯଥା : ନାଗରାଜ, ନାଗ-ନାଗୀ, ନାଗ ଦେବତା ଓ ନାଗ ବଂଶ ଇତ୍ୟାଦି ।



ପାଞ୍ଚହଜାର ବର୍ଷ ପୂର୍ବ ସିନ୍ଧୁ ସଭ୍ୟତାର
ମୃତ୍‌ପାତ୍ରରେ ଅଙ୍କିତ ସର୍ପଚିତ୍ର



ପୂଜିତ ନାଗ ଫଳକ, କର୍ଣ୍ଣାଟକ
ଆନୁମାନିକ ଖ୍ରୀ. ୧୬ଶ ଶତାବ୍ଦୀ

ଭାରତର ପ୍ରାଚୀନ ଇତିହାସରୁ ଜଣାଯାଏ ଯେ, ଗ୍ରୀକ୍ ବୀର ଆଲେକଜାଣ୍ଡାର ଖ୍ରୀ:ପୂ: ୩୨୬ ରେ ଭାରତର ଉତ୍ତର-ପଶ୍ଚିମ ଅଞ୍ଚଳ, ହିନ୍ଦୁକୁଶ ପର୍ବତମାଳାର ଖାଇବର ଗିରିପଥ ଦେଇ ଭାରତରେ ପ୍ରବେଶ କରିଥିଲେ । ଏହି ସମୟରେ କେତେକ ପାହାଡ ଗୁମ୍ଫାରେ ଥିବା ସର୍ପମାନଙ୍କୁ ଲୋକ ପୂଜା କରୁଥିବା ସେ ଦେଖିଥିଲେ । ତାଙ୍କର ଜଣେ ସେନାପତି ଏହିପରି ଏକ ଗୁମ୍ଫା ମଧ୍ୟରେ ପ୍ରବେଶ କରିବାକୁ ଚେଷ୍ଟା କରିଥିଲେ, କିନ୍ତୁ ସର୍ପମାନଙ୍କ ଭୀଷଣ ଗର୍ଜନରେ ସେ ଭୟଭୀତ ହୋଇ ସେହି କାର୍ଯ୍ୟରୁ କ୍ଷାନ୍ତ ହେଲେ । ପୂର୍ବେ ବୈଦିକ ଆର୍ଯ୍ୟମାନେ ପ୍ରାତଃସ୍ନାନ ସମାପନ ପରେ ନିତ୍ୟକର୍ମର ଏକ ମୁଖ୍ୟ ଅଙ୍ଗଭାବେ ସୂର୍ଯ୍ୟପୂଜା ଓ ବୃକ୍ଷପୂଜା କରୁଥିଲେ । ଏହି ସମୟରେ ଜନଜାତିର ଲୋକମାନଙ୍କ ମଧ୍ୟରେ ସର୍ପପୂଜା ପ୍ରଚଳିତ ଥିଲା । ସବୁ ସ୍ଥାନରେ ପୂଜା ନିମନ୍ତେ ବାସ୍ତବ ସର୍ପକୁ ପାଇବା ସମ୍ଭବ ନଥିଲା । ଏଣୁ ସେମାନେ ସର୍ପର ପ୍ରତୀକ କିମ୍ବା ପ୍ରତିମା ମାଟି, କାଠ, ପଥର, ଓ ଧାତୁରେ ତିଆରି କରି କିମ୍ବା ଚିତ୍ର ଅଙ୍କନ କରି ତାହାକୁ ବୃକ୍ଷ ନିକଟରେ ରଖି ପୂଜା କରିବାକୁ ଲାଗିଲେ । ଏହି ଭାବରେ ସୂର୍ଯ୍ୟ, ବୃକ୍ଷ ଓ ସର୍ପ ପୂଜା ଭାରତୀୟ ଲୋକଧର୍ମର ଏକ ବଳିଷ୍ଠ ଧାରାଭାବେ ପ୍ରଚଳିତ ହେଲା । ଏହି ପୂଜାସ୍ଥଳୀଗୁଡିକ ସାଧାରଣତଃ ଗ୍ରାମ ଉପକଣ୍ଠ ନଦୀ କିମ୍ବା ପୋଖରୀର ସ୍ନାନଘାଟ ନିକଟରେ ରହୁଥିଲା । ଏହି ପରମ୍ପରା ଅଦ୍ୟାବଧି ଭାରତର ବହୁ ଅଞ୍ଚଳର ଦେଖିବାକୁ ମିଳେ ।



ଅନନ୍ତଶାୟୀ ବିଷ୍ଣୁ, ଅହିହୋଲ୍, କର୍ଣ୍ଣାଟକ, ଆନୁମାନିକ ୮ମ ଶତାବ୍ଦୀ

ଯୋଗ, ଜ୍ୟୋତିଷଶାସ୍ତ୍ର ଓ ବାସ୍ତୁଶାସ୍ତ୍ରର ଗବେଷଣାରେ ବିଦ୍ୱାନମାନେ ସର୍ପଶକ୍ତିର ସନ୍ଧାନ ପାଇଲେ । ଏଗୁଡ଼ିକ ଯଥାକ୍ରମେ : କୁଣ୍ଡଳିନୀ ଶକ୍ତି, ସର୍ପଦୋଷ, ଓ ବାସ୍ତୁନାଗ । ଅର୍ଥାତ୍, ମନୁଷ୍ୟର ଯୋଗ ଓ ସଂଯମ ଶକ୍ତି, ସୂର୍ଯ୍ୟ, ପୃଥିବୀ ଏବଂ ଗ୍ରହମାନଙ୍କ ଘୂର୍ଣ୍ଣନ ପ୍ରକ୍ରିୟାରେ ସର୍ପ ବା ନାଗ ଶକ୍ତି ବିଦ୍ୟମାନ ବୋଲି ବିଶ୍ୱାସ କରାଗଲା । ଏହା ଦ୍ୱାରା ସର୍ପ ସରୀସୃପରୁ ଉପଦେବତା ଓ ଦେବତାର ସ୍ଥାନ ପାଇଲା । ତେବେ, ବୈଦିକ ଧର୍ମରେ ସର୍ପକୁ ମୁଖ୍ୟ ଦେବତାଙ୍କ ସେବକ ବା ଅନୁଚର ଭାବେ ଗ୍ରହଣ କରାଯାଇଛି । ଏହି ପରିକଳ୍ପନାରେ ବାସୁକି ସର୍ପ ପୃଥିବୀକୁ ଧାରଣା କରିଥିବାବେଳେ ଅନନ୍ତନାଗ ବିଷ୍ଣୁଙ୍କ ଶୟନ ଶଯ୍ୟା ଓ ନାରାୟଣଙ୍କ ମସ୍ତକ ଉପରେ ତା'ର ପ୍ରସାରିତ ଫଣାଗୁଡ଼ିକୁ ଛତ୍ର ସଦୃଶ ରଖିଥାଏ । ଏହି କ୍ଷେତ୍ରରେ ସେବିତ ଓ ସେବକ ଏକ ଓ ଅଭିନ୍ନ ହୋଇ 'ଅନନ୍ତ ନାରାୟଣ' ଭାବରେ ପରିଚିତ ହୁଅନ୍ତି । ଏହା ବ୍ୟତୀତ ସର୍ପମାନେ ଶିବଙ୍କ ଭୂଷଣ । ନଟରାଜ-ଶିବ ନୃତ୍ୟବେଳେ ଦୁଇ ହସ୍ତରେ, ମସ୍ତକ ଉପରେ ସର୍ପ ଧାରଣ କରିଥାଆନ୍ତି । ଏହା ଯେକୌଣସି ଅବସ୍ଥାରେ କାଳ ବା ମୃତ୍ୟୁକୁ ନିୟନ୍ତ୍ରଣରେ ରଖିବାର ସଙ୍କେତ । ଏଣୁ ସର୍ପକୁ 'କାଳସର୍ପ' ମଧ କୁହାଯାଏ । ପ୍ରାଚୀନ କାଳରେ ନାଗରାଜ ଓ ନାଗ-ନାଗୀ ମୂର୍ତ୍ତିର ପରିକଳ୍ପନା କରାଯାଇ ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ନାମରେ ପୂଜା କରାଯାଉଥିବା ଜଣାଯାଏ । ପରବର୍ତ୍ତୀ ପର୍ଯ୍ୟାୟରେ ପୌରାଣିକ ତଥ୍ୟ ଉପରେ ଆଧାରିତ ନାଗମାତା 'ମନସା' ଓ 'ଆସ୍ତିକ- ଜରତ୍କାରୁ'ଙ୍କୁ ପୂଜା କରାଗଲା । ଜୈନ ଓ ବୌଦ୍ଧ ଧର୍ମରେ ମଧ ସର୍ପକୁ

ତୀର୍ଥଙ୍କର ଓ ଗୌତମ ବୁଦ୍ଧଙ୍କ ସେବକ ଭାବେ ଗ୍ରହଣ କରାଯାଇଅଛି । ଏହି ପରିପ୍ରେକ୍ଷୀରେ ଜୈନ ପାର୍ଶ୍ୱନାଥଙ୍କ ଲାଞ୍ଛନ ସର୍ପ ଅଟେ । ନାଗରାଜ ମୁଚଲିନ୍ଦ ତପସ୍ୟାରତ ବୁଦ୍ଧଙ୍କୁ ସୁରକ୍ଷା ଦେଇଥିଲେ । ଏହା ବ୍ୟତୀତ ନାଗମାନେ ଗୌତମବୁଦ୍ଧଙ୍କ ଠାରୁ ଦୀକ୍ଷା ନେଇ ବୁଦ୍ଧ ତଥା ସଂଘର ବହୁ ସେବା କରିଛନ୍ତି । ସଂକ୍ଷିପ୍ତରେ ଏହା ଭାରତୀୟ ଧର୍ମଧାରଣାରେ ନାଗମାନଙ୍କ ସ୍ଥିତିର ସୂଚନା ।

ପୂର୍ବେ ଜନଜାତିମାନଙ୍କ ମଧ୍ୟରେ ଗୋଷ୍ଠୀ ସଂଘର୍ଷ ଲାଗିରହୁଥିଲା । ନିଜକୁ କିମ୍ବା ନିଜ ଗୋଷ୍ଠୀକୁ ବଳଶାଳୀ ତଥା ଚତୁର ଭାବେ ଦର୍ଶାଇବା ନିମନ୍ତେ ସେମାନେ ନିଜ ସହିତ ବାଘ, ସିଂହ, ବାଜ ଓ ନାଗ ଭଳି ପଶୁ, ପକ୍ଷୀ ଓ ସରୀସୃପ ନାମକୁ ସଂଯୋଗ କରୁଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଏହା ସେମାନଙ୍କ ସଂଜ୍ଞା, ବଂଶ ବା ଗୋତ୍ରର ପରିଚୟ ଦେଉଥିଲା । ଅନୁଧାନରୁ ଜଣାଯାଏ ଯେ, ଏମାନଙ୍କ ମଧ୍ୟରେ ନାଗ ଗୋଷ୍ଠୀର ସଂଖ୍ୟା ସର୍ବାଧିକ । ଏମାନେ ଭାରତରେ ବିଭିନ୍ନ ପ୍ରାନ୍ତରେ ବସବାସ କରୁଥିଲେ । ଅନେକ ସ୍ଥଳେ ଏମାନେ ନିଜ ବସତି ବା ଅଞ୍ଚଳକୁ ନିଜ ଗୋଷ୍ଠୀ ବା ବଂଶ ନାମରେ ନାମିତ କରିଥିବା ଦେଖାଯାଏ । ଉଦାହରଣ ସ୍ୱରୂପ, ଭାରତର ଦୁଇଟି



ସର୍ପଲାଞ୍ଛନଯୁକ୍ତ ଜୈନ ତୀର୍ଥଙ୍କର ପାର୍ଶ୍ୱନାଥ, ଆନୁମାନିକ ଖ୍ରୀ ୧୦ମ ଶତାବ୍ଦୀ, ଅଯୋଧ୍ୟା, ବାଲେଶ୍ୱର ।



ବୌଦ୍ଧଗୁମ୍ଫାର ନାଗରାଜ ଦମ୍ପତି, ଅଜନ୍ତା, ଖ୍ରୀ. ୬ଷ୍ଠ ଶତାବ୍ଦୀ

ପ୍ରାଚୀନ ସଂସ୍କୃତିସମ୍ପନ୍ନ ସ୍ଥାନ ହେଉଛି, 'ଅହିଛତ୍ର' ଓ 'ଅହିହୋଲ'। ଏହି ସ୍ଥାନ ଦ୍ୱୟ ଯଥାକ୍ରମେ ଉତ୍ତରଭାରତ ଓ ଦକ୍ଷିଣଭାରତରେ ଅବସ୍ଥିତ। ଏହା ବ୍ୟତୀତ ନାଗରାଜ୍ୟ (ନାଗାଲ୍ୟାଣ୍ଡ), ନାଗପୁର, ଅନନ୍ତନାଗ,ତକ୍ଷଶିଳା, ପଦ୍ମାବତୀ, ନାଗାବଳୀ ପର୍ବତ, ଛୋଟ ନାଗପୁର ମାନଭୂମି, ନାଗନାଡୁ, ତିରୁଅନନ୍ତପୁରମ, ନାଗପଟ୍ଟନମ, ଇତ୍ୟାଦି ସ୍ଥାନଗୁଡିକ ପ୍ରାଚୀନ କାଳରେ ନାଗଗୋଷ୍ଠୀମାନଙ୍କ ବିସ୍ତୃତି ସମ୍ପର୍କରେ ଯଥେଷ୍ଟ ସୂଚନା ଦିଏ। ବୈଦିକ ସାହିତ୍ୟ, ଧର୍ମଗ୍ରନ୍ଥ, ପୁରାଣ ଓ କାବ୍ୟମାନଙ୍କରେ ନାଗ ବା ସର୍ପମାନଙ୍କ ବାସସ୍ଥାନ ଭାବେ ବହୁସ୍ଥାନର ନାମ ଉଲ୍ଲେଖ ଅଛି। ଉଦାହରଣ ସ୍ୱରୂପ ଦେବୀ ଭାଗବତର ତଥ୍ୟ ଅନୁଯାୟୀ ଏମାନେ ପାତାଳ ତଥା ରସାତଳର ଅଧିବାସୀ। ପ୍ରାଚୀନ ବୌଦ୍ଧ ଗ୍ରନ୍ଥମାନଙ୍କରେ ନର୍ମଦା, ଯମୁନା, ସୋଣ ଇତ୍ୟାଦି  ନଦୀମାନଙ୍କ କୂଳରେ ଏମାନେ ବସତି ସ୍ଥାନ କରିଥିଲେ ବୋଲି କୁହାଯାଇଛି। ବୌଦ୍ଧ ଗ୍ରନ୍ଥ ମହାବସ୍ତୁର ଏକ ବାକ୍ୟ ହେଉଛି "ସୋଣଃ ସର୍ପଗତ ତଥା"। ରାମାୟଣର ତଥ୍ୟ ଅନୁଯାୟୀ ନାଗଦେବୀ ସୁରସା ଲଙ୍କାର ସମୁଦ୍ରର ଦେବୀ ହୋଇଥିବାବେଳେ କେତେକ ବୌଦ୍ଧଗ୍ରନ୍ଥରେ ଲଙ୍କାକୁ ନାଗଦ୍ୱୀପ ଭାବେ ଅଭିହିତ କରାଯାଇଛି।

ସାହିତ୍ୟରେ ସର୍ପ ବିଷୟର ସନ୍ଧାନ ନେବାବେଳେ ପ୍ରଥମେ ବେଦ ବିଷୟ ଦୃଷ୍ଟିକୁ ଆସେ। ବେଦରେ ପଣି, ଫଣି, ଅହି ଓ ଅହିବୃତ ଭଳି ଆର୍ଯ୍ୟେତର ଜାତିମାନଙ୍କ ବିଷୟରେ ଅନେକ ଆଖ୍ୟାନ ରହିଛି। ଧର୍ମଶାସ୍ତ୍ରମାନଙ୍କରେ ସର୍ପ ଓ ନାଗମାନଙ୍କ ଠାରୁ ରକ୍ଷା ପାଇବା ନିମନ୍ତେ ବିଭିନ୍ନ ବିଷୟ କୁହାଯାଇଛି। ରାମାୟଣରେ ନାଗଦେବୀ ଓ ନାଗବଂଶ ମାନଙ୍କ ବିଷୟରେ କିଛି ତଥ୍ୟ ରହିଛି। ମହାଭାରତରେ ନାଗ ବ୍ୟକ୍ତିବିଶେଷ, ବଂଶ ତଥା ନାଗକନ୍ୟାମାନଙ୍କ ସମ୍ପର୍କରେ ବହୁ ବିଷୟ ଦେଖିବାକୁ ମିଳେ। ଏହି ଉଭୟ ଗ୍ରନ୍ଥରେ ନାଗ ଓ ନାଗପାଶ ଅସ୍ତ୍ରର ବ୍ୟବହାର ବିଷୟରେ ଉଲ୍ଲେଖ ଅଛି। ପରବର୍ତ୍ତୀ ପର୍ଯ୍ୟାୟରେ ଲିଖିତ ବହୁ ସାହିତ୍ୟିକ ଆଖ୍ୟାନରେ ଏହା ଲିପିବଦ୍ଧ ରହିଛି। ବୌଦ୍ଧଗ୍ରନ୍ଥମାନଙ୍କରେ ନାଗମାନେ ବୁଦ୍ଧ ଓ ସଂଘ ଗୁଡିକ ସହିତ ଓତପ୍ରୋତ ଭାବେ ଜଡିତଥିବା ଜଣାଯାଏ। ଏହା ବ୍ୟତୀତ ଭାରତର ବିଭିନ୍ନ ଅଞ୍ଚଳର ଲୋକକଥା, ଲୋକଗୀତ, ଢଗଢମାଳି ଗୁଡିକରେ ମଧ ସର୍ପ ଓ ନାଗମାନଙ୍କ ବିଷୟ ଶୁଣାଯାଏ।

ସର୍ପର ଭାବଭଙ୍ଗୀ ବହୁ ସମୟରେ ଛନ୍ଦମୟ ଓ କଳାତ୍ମକ। ପ୍ରାରମ୍ଭରେ ପୂଜାର୍ଚ୍ଚନା ନିମନ୍ତେ ମନୁଷ୍ୟ ତା'ର ସରୀସୃପ ରୂପର ଚିତ୍ର ଅଙ୍କନ କରି କିମ୍ବା ମାଟି, କାଠ, ପଥର ଓ ଧାତୁରେ ମୂର୍ତ୍ତି ତିଆରି କରୁଥିଲା। ପରବର୍ତ୍ତୀ ପର୍ଯ୍ୟାୟରେ ସର୍ପଠାରେ ଦେବତ୍ୱ ଆରୋପକରି ତାର ପାଞ୍ଚ କିମ୍ବା ସାତ ଫଣା ସହିତ ଦେବତାର ମନୁଷ୍ୟ ଶରୀର ସଂଯୋଗ କରାଗଲା। ଏହି କାଳ୍ପନିକ ବିଷୟଟି ବିଭିନ୍ନ ଅଞ୍ଚଳର କଳା ଓ ସ୍ଥାପତ୍ୟରେ ଭିନ୍ନ ଭିନ୍ନ ଭାବରେ ଉପସ୍ଥାପିତ ହୋଇଛି। ଏହା ବ୍ୟତୀତ ସର୍ପ ଓ ନାଗରୂପ ଅଳଙ୍କାରରେ ମଧ ସ୍ଥାନ ପାଇଛି, ଯଥା: ସର୍ପ କୁଣ୍ଡଳ, ନାଗଯଜ୍ଞୋପବୀତ, ନାଗହାର, ନାଗବଳୟ ଇତ୍ୟାଦି। ଏହି ଭାବରେ ଭାରତୀୟ ଧର୍ମ, ସାହିତ୍ୟ, କଳା ଓ ସ୍ଥାପତ୍ୟରେ ଏହି ସଂସ୍କୃତିର ମହତ୍ତ୍ୱପୂର୍ଣ୍ଣ ଭୂମିକା ରହିଛି।



ଦକ୍ଷିଣ ଭାରତୀୟ ନାଗମୂର୍ତ୍ତି, ଆନୁମାନିକ ଖ୍ରୀ. ୧୧ଶ ଶତାବ୍ଦୀ



# ନାଗ ବଂଶର ପ୍ରାଚୀନତା

ଏସିଆ ମହାଦେଶର ବୃହତମ ହ୍ରଦ କାସ୍ପିୟାନ ସାଗର ଅଞ୍ଚଳ ପ୍ରାଚୀନ କାଳର ବହୁ ସଭ୍ୟତା ଓ ସଂସ୍କୃତିର ଉତ୍ପତ୍ତିସ୍ଥଳ ଥିଲା । ଭାରତୀୟ ବିଦ୍ୱାନମାନେ ଏହାକୁ 'କାଶ୍ୟପସାଗର' ଭାବେ ଅଭିହିତ କରିଥାଆନ୍ତି । ଆମ ପୁରାଣ ତଥ୍ୟ ଅନୁଯାୟୀ ମହର୍ଷି କାଶ୍ୟପ ଓ ତାଙ୍କ ପତ୍ନୀ କଦ୍ରୁଙ୍କଠାରୁ ନାଗ ବା ସର୍ପମାନେ ଜନ୍ମ ହୋଇଥିବାବେଳେ ତାଙ୍କ ଅନ୍ୟ ପତ୍ନୀମାନଙ୍କଠାରୁ ଗରୁଡ ବା ପକ୍ଷୀ ଜାତି ଓ ଅନ୍ୟ କେତେକ ପ୍ରାଣୀ ଜାତ ହୋଇଥିଲେ । ଏଣୁ ପୂର୍ବେ ସର୍ପ ଓ ଅନ୍ୟ ପ୍ରାଣୀମାନଙ୍କ ବଂଶଧର ବୋଲାଉଥିବା ଅନେକ ଜନଜାତି ଏସିଆର ମଧ୍ୟଭାଗରେ ବସବାସ କରୁଥିଲେ । ଏହି ଭାବରେ କାସ୍ପିୟାନ ସାଗରର ଦକ୍ଷିଣ ଉପକୂଳରେ କସ୍‌ପୀ ବା କସ୍ପୀୟସ୍ ନାମକ ଜାତି ବାସ କରନ୍ତି । ଏମାନେ କାଶ୍ୟପଙ୍କ ବଂଶଧର ହୋଇପାରନ୍ତି । ସେହିପରି ଟାଇଗ୍ରୀସ ନଦୀ କୂଳରେ 'କୁର୍ଦ୍ଦିସ୍ଥାନ' ଅବସ୍ଥିତ, ଯାହାକି କଦ୍ରୁଙ୍କ ମୂଳ ସ୍ଥାନ ହୋଇପାରେ । ଏମାନଙ୍କ ମଧ୍ୟରେ ନାଗଗୋଷ୍ଠୀ ସହିତ ତୁରାନ ନାମକ ସ୍ଥାନରେ ବାସକରୁଥିବା ଅନ୍ୟ ଏକ ଗୋଷ୍ଠୀକୁ 'ତୁରାନୀ' କୁହାଯାଉଥିଲା । ବିଦ୍ୱାନ ମେକ୍ସମୁଲରଙ୍କ ମତରେ ଏମାନେ ତୁରଙ୍ଗ ବା ଅଶ୍ୱବଂଶୀୟ ଜାତି । ଅନ୍ୟ ଭାବରେ ଏହା ପ୍ରାଚୀନ ହୁଣ ଜାତିର ଏକ ଶାଖା । ଅଶ୍ୱ ଓ ସର୍ପ ଭଳି ଦ୍ରୁତଗାମୀ ଏହି ଜାତିମାନେ ଦୁର୍ଦ୍ଦାନ୍ତ ମଧ୍ୟ ଥିଲେ । ଏମାନେ ଅନ୍ୟ ଅଞ୍ଚଳରେ ପ୍ରବେଶ କରି ଲୁଣ୍ଠନ ଓ ହତ୍ୟା

ଚିତ୍ର : ଗଞ୍ଜାମ ଜିଲ୍ଲା, ଆସ୍କା, ମାଳତୀ ଗଡର ପୂଜିତ ନାଗ ଦେବତା ।

କରୁଥିଲେ । ଏସିଆର ମଙ୍ଗୋଲମାନେ ମଧ ନିଜକୁ ସର୍ପ ଓ ବ୍ୟାଘ୍ର ବଂଶୀୟ ଦୁର୍ଦ୍ଦାନ୍ତ ଜାତିଭାବେ ପରିଚିତ କରାଇବା ସହିତ ସେମାନଙ୍କୁ ପୂଜା କରନ୍ତି । ଏପରିକି ଏମାନଙ୍କ ସାଂସ୍କୃତିକ ଜୀବନରେ ସର୍ପ (ଡ୍ରାଗନ) ଓ ବ୍ୟାଘ୍ର (ଟାଇଗର) ନୃତ୍ୟର ଲୋକପ୍ରିୟତା ରହିଛି । ଏଣୁ ଏହି ଲୁଣ୍ଠନକାରୀ ଯାଯାବର ଜାତିମାନଙ୍କୁ ଭାରତୀୟ ଆର୍ଯ୍ୟମାନେ 'ଦସ୍ୟୁ' ଆଖ୍ୟା ଦେଇଥିଲେ । ହୁଣ୍ ଓ ମଧଏସିଆର ଅନ୍ୟ କେତେକ ଜାତି ଭାରତରେ ଅନୁପ୍ରବେଶ କରି ଲୁଣ୍ଠନ ଓ ଅତ୍ୟାଚାର କରିଥିବା ଦୃଷ୍ଟାନ୍ତ ପ୍ରାଚୀନ ଇତିହାସରେ ରହିଛି । ତେବେ, ପରବର୍ତ୍ତୀ ସମୟରେ ଏଥିରୁ ଅନେକ ଗୋଷ୍ଠୀ ଭାରତର ଅନୁକୂଳ ବାତାବରଣ ମଧରେ ସ୍ଥାୟୀଭାବେ ବସବାସ କରିବା ସହିତ ଭାରତୀୟ ଧର୍ମ ଓ ସଂସ୍କୃତି ସହିତ ଜଡିତ ହୋଇପଡିଛନ୍ତି । ବହୁ ଐତିହାସିକ ଓ ନୃତତ୍ତ୍ୱବିତ୍ ଏହା ଉପରେ ଗବେଷଣା କରି ବହୁ ତଥ୍ୟ ଆବିଷ୍କାର କରିଛନ୍ତି । ଏହା, ତାହା ମଧରୁ କିଞ୍ଚିତ ମାତ୍ର ।



ଭୁବନେଶ୍ୱର, ଶିଶିରେଶ୍ୱର ଦେଉଳର ନାଗ ଦ୍ୱାରପାଳ, ଖ୍ରୀ. ୮ମ ଶତାବ୍ଦୀ

## ବୈଦିକ ଯୁଗରେ ନାଗ ପରମ୍ପରା

ବୈଦିକ ଯୁଗରେ ନାଗଗୋଷ୍ଠୀ ବା ନାଗବଂଶୀମାନଙ୍କ ସ୍ଥିତି ଦୃଢ ଥିଲା । ସେ ସମୟରେ ଏମାନେ ପଣି, ଫଣି, ଅର୍ବୁଦ, ବୃତ୍ର, ଅହି, ଅହିବୃତ୍ର ଇତ୍ୟାଦି ନାମରେ ପରିଚିତ ଥିଲେ । ଏହି ଗୋଷ୍ଠୀମାନେ ସାଧାରଣତଃ ଅନାର୍ଯ୍ୟ ବା ଅସୁର ଭାବେ ଅଭିହିତ ହେଉଥିଲେ । ବେଦରେ ଏମାନଙ୍କ ବିସ୍ତୃତ ବର୍ଣ୍ଣନା ଓ ଆଖ୍ୟାନମାନ ଉଲ୍ଲେଖ ଅଛି । ଏମାନଙ୍କ ମଧ୍ୟରୁ କେତେକ ଆର୍ଯ୍ୟମାନଙ୍କର ଦାସରୂପେ କାର୍ଯ୍ୟ କରୁଥିବାବେଳେ ଅନ୍ୟ କେତେକ ଆର୍ଯ୍ୟଗୋଷ୍ଠୀ ସହିତ ଶତ୍ରୁତା କରୁଥିବା ଜଣାଯାଏ । କେତେକ ବିଦ୍ୱାନଙ୍କ ମତରେ ବୈଦିକ ଯୁଗର ଦସ୍ୟୁମାନେ ମଧ୍ୟ ଅହି ବା ଫଣି ସମ୍ପ୍ରଦାୟର ଅଟନ୍ତି । ବେଦ, ଉପନିଷଦ ଓ ବ୍ରାହ୍ମଣ ଗ୍ରନ୍ଥମାନଙ୍କର ଏହି ପ୍ରକାର ନାଗଗୋଷ୍ଠୀର ବର୍ଣ୍ଣନା ରହିଥିବାବେଳେ ନାଗପୂଜାର ପ୍ରଚଳନ ଥିବା ସୂଚନା ମିଳେନାହିଁ । ଏଥିରୁ ଅନୁମେୟ ଯେ, ପୂର୍ବେ ଆର୍ଯ୍ୟମାନଙ୍କ ମଧ୍ୟରେ ନାଗପୂଜାର ପରମ୍ପରା ପ୍ରଚଳିତ ନଥିଲା । ବଙ୍ଗ, ସର୍ପ ବା ନାଗମାନଙ୍କୁ ବଶ କରିବା ନିମନ୍ତେ ଅଥର୍ବ ବେଦରେ ବିଭିନ୍ନ ପ୍ରକାର ମନ୍ତ୍ରତନ୍ତ୍ରର ବର୍ଣ୍ଣନା ରହିଛି ।

ବୈଦିକ ଯୁଗରେ ନାଗଗୋଷ୍ଠୀଙ୍କୁ କେତେକ ସ୍ଥଳେ 'ଦାହି' ଓ 'ଦକ୍ଷୁ' ବୋଲି କୁହାଯାଉଥିଲା । ଅନ୍ୟ କେତେକ ସ୍ଥଳେ ଏମାନେ ଫଣି ବା ପର୍ଣ୍ଣି ବୋଲି ସୂଚୀତ ହେଉଥିଲେ । ଭାଷାବିତ୍‌ମାନେ 'ପର୍ଣ୍ଣି' ଏକ ମୌଳିକ ଶବ୍ଦ ବୋଲି ମନେ କରନ୍ତି । ଏହି ଗୋଷ୍ଠୀ ମଧ୍ୟରୁ କେତେକ ରସାନଦୀ ତଟବର୍ତ୍ତୀ ବନ ପ୍ରଦେଶରେ ବାସ କରୁଥିଲେ । ଏଣୁ ଏମାନଙ୍କୁ ରସାତଳବାସୀ ବୋଲି କୁହାଯାଉଥିଲା । ଭାଷ୍ୟକାର ସାୟଣାଚାର୍ଯ୍ୟ ଓ ମହିଧର ବେଦର ଆଲୋଚନା କରି ଏହି ଜାତିମାନଙ୍କୁ ଅନାର୍ଯ୍ୟ ଓ ଅସୁର ବୋଲି କହିଛନ୍ତି । ଋକ୍‌ବେଦର ସରମା ଆଖ୍ୟାନରୁ ଜଣାଯାଏ ଯେ, ଫଣିମାନେ ସରମାଙ୍କୁ ପ୍ରଶ୍ନ କରିଥିଲେ "ଇନ୍ଦ୍ର କିଏ ?" ଏଥିରୁ ସୂଚନା ମିଳେ ଯେ, କେତେକ ଛୋଟ ଛୋଟ ନାଗଗୋଷ୍ଠୀ ଆର୍ଯ୍ୟମାନଙ୍କ ଦେବତା, ଇନ୍ଦ୍ରଙ୍କୁ ଜାଣିନଥିଲେ ।

ବୈଦିକ ସାହିତ୍ୟରେ ନାଗମାତା କଦ୍ରୁ ଓ ସେମାନଙ୍କୁ ସନ୍ତାନମାନଙ୍କ ବିଷୟରେ ବର୍ଣ୍ଣନା ରହିଛି । ଋକ୍‌ବେଦର 'କାଦ୍ରବେୟ' ନାମକ ସର୍ପ ଏମାନଙ୍କ ମଧ୍ୟରେ ଅନ୍ୟତମ । ଏହି ବେଦର ଦଶମ ମଣ୍ଡଳରେ ଅର୍ବୁଦ ନାଗଙ୍କ ବିଷୟରେ ଉଲ୍ଲେଖ ଅଛି । ଏହା ବ୍ୟତୀତ ବ୍ରାହ୍ମଣ ଗ୍ରନ୍ଥମାନଙ୍କରେ ମଧ୍ୟ ବିଭିନ୍ନ ନାମର ସର୍ପମାନଙ୍କ ବିଷୟରେ ଉଲ୍ଲେଖ ଅଛି । ଏମାନଙ୍କ ମଧ୍ୟରେ ଅର୍ବୁଦ, ଜରତ୍‌କର୍ଣ୍ଣ ଅନ୍ୟତମ । 'ଶତପଥବ୍ରାହ୍ମଣ'ର ଶ୍ଳୋକ ଅନୁଯାୟୀ ସର୍ପରାଜ୍ଞୀ ଓ [illegible] କରୁଣାରୁ

ଧରଣୀରାଣୀ ଶସ୍ୟଶ୍ୟାମଳା ହୋଇଥାଏ ବୋଲି କୁହାଯାଇଛି । ଏଠାରେ ସର୍ପଦେବୀ କୁଣ୍ଡଳିନୀ ଶକ୍ତି ଓ ବର୍ଷାର ପ୍ରତୀକ ଅଟନ୍ତି । ଅର୍ଥାତ୍, ଏଠାରେ ନାଗମାନଙ୍କୁ ଦୈବୀଶକ୍ତି ଭାବେ ଗ୍ରହଣ କରାଯାଇଛି । ଏହିପରି ବୈଦିକ ଯୁଗରେ ନାଗକୁ ଏକ ପ୍ରାକୃତିକ ଶକ୍ତିଭାବେ ଗ୍ରହଣ କରାଯାଇଥିବା ସହିତ କେତେକ ନାଗଗୋଷ୍ଠୀ ବଳିଷ୍ଠ ଥିଲେ । ଆର୍ଯ୍ୟମାନେ ଏମାନଙ୍କୁ ଯୁଦ୍ଧରେ ପରାସ୍ତ କରିବା କଷ୍ଟସାଧ ଜାଣି ଅଥର୍ବ ବେଦରେ ସର୍ପ ତଥା ନାଗଙ୍କୁ ବଶୀଭୂତ କରିବା ନିମନ୍ତେ ବିଭିନ୍ନ ମନ୍ତ୍ର, ତନ୍ତ୍ରର ବ୍ୟବସ୍ଥା କରିଥିଲେ । ବେଦମାନଙ୍କରେ ବର୍ଣ୍ଣିତ ସର୍ପ ଓ ନାଗମାନଙ୍କର ବହୁ ବିଷୟ ବିଭିନ୍ନ ଭାବରେ ରୂପାନ୍ତରିତ ହୋଇ ପରବର୍ତ୍ତୀ ସମୟର ପୁରାଣମାନଙ୍କରେ ସ୍ଥାନ ପାଇଛି ।

## ଅଷ୍ଟକୁଳାଚଳ

ପୁରାଣ ମତରେ ଆଠଗୋଟି ପର୍ବତ ପୃଥିବୀକୁ ଆଠ ଦିଗରୁ ରକ୍ଷା କରନ୍ତି । ଏହାକୁ ଅଷ୍ଟକୁଳାଚଳ କୁହାଯାଉଥିବା ବେଳେ ଏହି ପର୍ବତମାନଙ୍କରେ ଅଷ୍ଟନାଗ ବାସକରି ଏହି କାର୍ଯ୍ୟରେ ସହଯୋଗ କରିଥାଆନ୍ତି । ଏହି ପର୍ବତମାଳାର ନାମ ହେଉଛି, ମହେନ୍ଦ୍ର, ମଳୟ, ସହ୍ୟ, ଶୁକ୍ତିମାନ, ଋକ୍ଷ, ବିନ୍ଧ୍ୟ, ପାରିପାତ୍ର ଓ ହିମାଳୟ । ତେବେ, କେତେକଙ୍କ ମତରେ ହିମାଳୟ କୁଳାଚଳ ମଧ୍ୟରେ ନାହିଁ । ଏଣୁ ' ସପ୍ତକୁଳାଚଳ' ସଠିକ ।

ଅନ୍ୟ କେତେକ ପୁରାଣରେ ଅଷ୍ଟନାଗଙ୍କ ଦିଗ ଓ ନାଗ ପତ୍ନୀମାନଙ୍କ ନାମ ମଧ ରହିଛି । ଏହାର ସୂଚନା ନିମ୍ନରେ ପ୍ରଦତ୍ତ ହେଲା । ଅର୍ଥାତ୍ ଅଷ୍ଟନାଗ ଅଷ୍ଟଦିଗପାଳଙ୍କ ଭଳି କାର୍ଯ୍ୟ କରିଥାଆନ୍ତି ।

| ଦିଗ | ନାଗ | ନାଗପତ୍ନୀ |
|---|---|---|
| ପୂର୍ବ | ଅନନ୍ତ | ପଦ୍ମା |
| ଅଗ୍ନୀ | ବାସୁକୀ | ଉତ୍ପଳା |
| ଦକ୍ଷିଣ | ତକ୍ଷକ | ସୁମେଧା |
| ନୈଋତ | କର୍କୋଟକ | ସୁପଥା |
| ପଶ୍ଚିମ | ଶଙ୍ଖ | ଦଧିପ୍ରିୟ |
| ବାୟୁ | କୁଳିକ | ଶ୍ୱେତମୁଖୀ |
| ଉତ୍ତର | ପଦ୍ମ | ସୁନେତ୍ରା |
| ଐଶାନ୍ୟ | ମହାପଦ୍ମ | ସୁଗନ୍ଧିନୀ |



କୋଣାର୍କ, ସୂର୍ଯ୍ୟ ମନ୍ଦିର ଗାତ୍ରରେ ନାଗନାଗୀ ଯୁଗଳ ମୂର୍ତ୍ତି, ଖ୍ରୀ. ୧୩ଶ ଶତାବ୍ଦୀ



ପଶ୍ଚିମବଙ୍ଗ, ନାଗରାଣୀ ପଦ୍ମାବତୀ (ଧାତବ ପ୍ରତିମା), ଆନୁମାନିକ ୧୦ମ ଶତାବ୍ଦୀ

## ପୁରାଣରେ ନାଗ

କେତେକ ସଂସ୍କୃତ ପୁରାଣ ଓ କାବ୍ୟରେ ବହୁ ସର୍ପଙ୍କ ନାମ ଉଲ୍ଲେଖ ଅଛି । କବିରାଜ କୃଷ୍ଣସିଂହ ତାଙ୍କ ରଚିତ ଓଡିଆ ମହାଭାରତରେ ମଧ ଅନେକ ସର୍ପଙ୍କ ନାମ ଦେଇଛନ୍ତି । ତାହା ନିମ୍ନରେ ଉଦ୍ଧୃତ ହେଲା

ବହୁତ ଭୁଜଙ୍ଗମ ଅଛନ୍ତି ମହିରେ ।
କେତେ ତାହା ବିସ୍ତାରି କହିବା ସଭାରେ ।।
ପ୍ରଥମେ ବ୍ରହ୍ମପୁତ୍ର ଶେଷଦେବ ହେଲେ ।
ତାହାଙ୍କ ଅନୁଜ ବାସୁକୀ ବୋଲାଇଲେ ।।
ଐରାବତ, ତକ୍ଷକ, କର୍କୋଟ ଧନଞ୍ଜୟ ।
ମଣିନାଗ, ପୂରଣ, ଆଉ କାଳକେୟ ।।
ପିଞ୍ଜରକ, ଏଳାପତ୍ର, ନୀଳ, ଅନୀଳ ।
ବାମନ, କଳମାଷ,ଆର୍ଯ୍ୟକ, ଶବଳ ।।
ଉଗ୍ରକ, କଳଶ, ପୋତକ, ସୁରମୁଖ ।
ବିମଳ, ପିଣ୍ଡକ, ଯେ ଆପ୍ତ ଦଧିମୁଖ ।।
ଶଙ୍ଖ, ବାଳିଶିଖ, ନିଷ୍ଠାବକ, କର୍କୋଟକ ।
ପିଙ୍ଗଳ, ନଦୂତା ଯେ ମୁଦଗର ପିଣ୍ଡକ ।।
ବାହ୍ୟକର୍ଣ୍ଣ, ହସ୍ତୀପଦ, ଯେ ଅଶ୍ୱତର ।
ବୃତ, ସମୂର୍ତ୍ତକ, ମୁଷାଣ୍ଡକ, କୁଞ୍ଜର ।।

ଶଙ୍ଖସୁଖ, ପିଣ୍ଡାରକ, ଯେ କ୍ଷେମକ ।
କର୍କଶ, ଆକର୍କଶ, ବିଲ୍ୱଳ, ହିଳକ ।।
କୁଣ୍ଡୋଦର, ମହୋଦର, କରବୀର ।
ପୁଷ୍ପଦଂଷ୍ଟ୍ରା, ବିଲ୍ୱ, ପାଣ୍ଡର, ଶଙ୍ଖଶିର ।।
ମୂଷକାଦ, ପୂର୍ଣ୍ଣଭଦ୍ର, ହରିଦ୍ରକ ।
ଶ୍ରୀବହ, ଅପରାଜିତ, ଯେ ଜ୍ୟୋତିକ ।।
କଉରବୀ, ଧୃତରାଷ୍ଟ୍ର, ଶଙ୍ଖପିଣ୍ଡ ।
ବିରଜା, ସୁବାହୁ, ଫରକ, ଅଳିପିଣ୍ଡ ।।
ହସ୍ତୀପିଣ୍ଡ, ସୁମୁଖ,ହୋମଗୃହ, କୁଠର ।
କୌଣପାଟାନ, କୁମୁଦ, ତିତ୍ତିରି, ପ୍ରଭାକର ।।
କଦମ୍ବ, କର୍ଦ୍ଦମ, ବହୁ, ମୂଳକ, ନାଗ ।
ଏମାନେଟି ନାଗମାନଙ୍କ ମହାଭାଗ ।।

## ରାମାୟଣ ଯୁଗରେ ନାଗ

ରାମାୟଣ ଭାରତ କାହିଁକି, ପୃଥିବୀର ଏକ ପ୍ରାଚୀନ ଗ୍ରନ୍ଥ ଭାବେ ପରିଗଣିତ ହୁଏ । ଏହାର ରଚୟିତା ମହର୍ଷି ବାଲ୍ମିକି । କଥିତ ଅଛି ଯେ, ବାଲ୍ମିକି ପ୍ରଥମେ ଦସ୍ୟୁ ରତ୍ନାକର ନାମରେ ପରିଚିତ ଥିଲେ । ଘଟଣାକ୍ରମରେ ତାଙ୍କର ଜ୍ଞାନ ଉଦୟ ହେଲା । ସେ ମହାନ ରାମାୟଣ ଗ୍ରନ୍ଥ ରଚନା କରି ଭାରତୀୟ ଆର୍ଯ୍ୟ ସମାଜରେ ମହର୍ଷିଭାବରେ ଏକ ଉଚ୍ଚସ୍ଥାନର ଅଧିକାରୀ ହେଲେ । ତେବେ, ଦସ୍ୟୁ ରତ୍ନାକର ପୂର୍ବେ ବନରେ ବାସ କରୁଥିବା ନାଗ ଗୋଷ୍ଠୀର ଜଣେ ବ୍ୟକ୍ତି ଥିବା ସମ୍ଭବ । ରାମାୟଣର ତଥ୍ୟ ଅନୁଯାୟୀ ଗଙ୍ଗାର ଦକ୍ଷିଣ ତୀରରେ ଥିବା ବନାଞ୍ଚଳ ଅନାର୍ଯ୍ୟମାନଙ୍କ ବାସସ୍ଥଳୀ ଥିଲା । ଏଠାରେ ତମସା (ଅନ୍ଧାର) ନଦୀ ପ୍ରବାହିତ ହେଉଥିଲା ଏବଂ ଏହି ନଦୀ କୂଳରେ ବାଲ୍ମୀକିଙ୍କ ଆଶ୍ରମ ଥିଲା । ରାମାୟଣରେ ନାଗମାନଙ୍କ ବିଷୟରେ ଅଳ୍ପ ତଥ୍ୟ ଥିବାରୁ ସେ ଯୁଗରେ ଏମାନଙ୍କ ବିଶେଷ ଗୁରୁତ୍ୱ ଥିବା ଜଣାଯାଏ ନାହିଁ ।

ରାମାୟଣର ତଥ୍ୟ ଅନୁଯାୟୀ ହନୁମାନ ସୀତାଙ୍କ ସନ୍ଧାନ ନିମନ୍ତେ ସମୁଦ୍ର ଅତିକ୍ରମ କରି ଲଙ୍କାକୁ ଯାତ୍ରା କଲାବେଳେ ଲଙ୍କାର ଦେବୀ ନାଗୀ 'ସୁରସା' ରାକ୍ଷସୀ ସହିତ ତାଙ୍କର ସଂଘର୍ଷ ହୋଇଥିଲା । ଏହି ସମୟରେ ହନୁମାନ ନିଜ ଶରୀରକୁ

କ୍ଷୁଦ୍ରକରି ସୁରସାଙ୍କ ଗର୍ଭରେ ପ୍ରବେଶ କରି ପୁଣି ବାହାରକୁ ଆସିଗଲେ । ସୁରସା ନାଗଦେବୀ ଏଥିରେ ହନୁମାନଙ୍କ ଶକ୍ତିର ସନ୍ଧାନ ପାଇ ତାଙ୍କୁ ବାଟ ଛାଡି ଦେଇଥିଲେ । ରାମ ରାବଣ ଯୁଦ୍ଧବେଳେ ରାବଣ ପୁତ୍ର ଇନ୍ଦ୍ରଜିତ ନାଗପାଶ ଦ୍ୱାରା ରାମ ଓ ଲକ୍ଷ୍ମଣଙ୍କୁ ବାନ୍ଧି ପକାଇଲେ । ଗରୁଡ ସେଠାରେ ପହଞ୍ଚି ନାଗବନ୍ଧନରୁ ଦୁଇ ଭ୍ରାତାଙ୍କୁ ମୁକ୍ତ କରିଥିଲେ । ରାବଣର ଜଣେ ଭ୍ରାତା ଅହିରାବଣ ମଧ ରାମଲକ୍ଷ୍ମଣଙ୍କ ସହିତ ଯୁଦ୍ଧ କରିଥିଲା । ଏହି ଅହି ଶବ୍ଦଟି ନାଗ ବା ସର୍ପକୁ ବୁଝାଏ । ତେବେ, ରାମାୟଣର ଅନ୍ତିମ ଚରଣରେ ରାମଙ୍କ ଦୁଇ ପୁତ୍ର,ଲବ ଓ କୁଶ ମଧରୁ କୁଶ ଜଣେ ନାଗବଂଶୀ ରାଜକନ୍ୟାଙ୍କୁ ବିବାହ କରିଥିଲେ ।

ସୂଚନାଯୋଗ୍ୟ ଯେ କେତେକ ପ୍ରାଚୀନ ବୌଦ୍ଧଗ୍ରନ୍ଥ ତଥା ତାମିଲ କାବ୍ୟ 'ମଣିମେଖଳାଇ'ରେ ଲଙ୍କାକୁ ନାଗଦେଶ ବୋଲି କୁହାଯାଇଛି । ଅଦ୍ୟାବଧି ଲଙ୍କାରେ ଅନେକ ନାଗ ଓ ସର୍ପ ବଂଶୀୟ ଜାତି ଓ ଜନଜାତି ବାସ କରନ୍ତି ।





ଭୁବନେଶ୍ୱର, ବିନ୍ଦୁସାଗର ତୀରବର୍ତ୍ତୀ ବଳରାମ ମୂର୍ତ୍ତି, ଆନୁମାନିକ ଖ୍ରୀ. ୬ଷ୍ଠ ଶତାବ୍ଦୀ ।



ପ୍ରାଚୀ ଅବବାହିକା, ମୁଦ୍‌ଗଳ ଗ୍ରାମର ଅନନ୍ତ ବିଷ୍ଣୁମୂର୍ତ୍ତି, ଆନୁମାନିକ ଖ୍ରୀ. ୬ଷ୍ଠ ଶତାବ୍ଦୀ ।



# ମହାଭାରତ ଓ ଭାଗବତ ପୁରାଣରେ ନାଗ

## କଶ୍ୟପ ଓ କଦ୍ରୁ

ବେଦରେ କଶ୍ୟପ ଓ କଦ୍ରୁ ତଥା ନାଗମାନଙ୍କ ଜନ୍ମବୃତ୍ତାନ୍ତ ରହିଛି । ପରବର୍ତ୍ତୀ ସମୟରେ ରଚିତ ମହାଭାରତ ସମେତ ଅନ୍ୟ କେତେକ ପୁରାଣରେ ବିଭିନ୍ନ ଭାବରେ ଏହି ଆଖ୍ୟାନଟି ରୂପାୟିତ ହୋଇଛି । ମହାଭାରତର ଆଖ୍ୟାନ ଅନୁଯାୟୀ ମହର୍ଷି କଶ୍ୟପ ମାରିଚି ମହର୍ଷିଙ୍କ ମାନସପୁତ୍ର ତଥା ପ୍ରଜାପତି ବ୍ରହ୍ମାଙ୍କ ପୌତ୍ର ଅଟନ୍ତି । ଅନ୍ୟ ଭାବରେ ସେ ମାରିଚି ଓ ତାଙ୍କ ପତ୍ନୀ କାଳାଙ୍କ ପୁତ୍ର । ମହର୍ଷି କଶ୍ୟପ ଦକ୍ଷ ପ୍ରଜାପତିଙ୍କ କନ୍ୟା କଦ୍ରୁଙ୍କୁ ବିବାହ କରିଥିଲେ । ଏକଦା କଦ୍ରୁ ବଳଶାଳୀ ସହସ୍ର ନାଗଙ୍କ ମାତା ହେବା ଇଚ୍ଛା ସ୍ୱାମୀଙ୍କ ଆଗରେ ପ୍ରକାଶ କଲେ । ଏହାଦ୍ୱାରା ତାଙ୍କଠାରୁ ସହସ୍ର ଅଣ୍ଡ ଜାତ ହେଲା ଏବଂ ସେଥିରୁ ସହସ୍ର ନାଗ ବା ସର୍ପ ଜାତ ହେଲେ । କେତେକ ପୁରାଣରେ ଏମାନଙ୍କ ନାମ ଉଲ୍ଲେଖ ଅଛି । ତେବେ, ସେମାନଙ୍କ ମଧ୍ୟରେ ଅଷ୍ଟନାଗ ପ୍ରଧାନ ଅଟନ୍ତି । ସେମାନେ ହେଲେ , ବାସୁକୀ, ଅନନ୍ତ, ପଦ୍ମ, ମହାପଦ୍ମ, ତକ୍ଷକ, କୁଳିକ, କର୍କୋଟକ ଓ ଶଂଖ ।

## କଦ୍ରୁ ଓ ବିନତା

ସର୍ପମାନଙ୍କ ମାତା କଦ୍ରୁ ଓ ଗରୁଡ ବା ପକ୍ଷୀମାନଙ୍କ ମାତା ବିନତା, ଦୁଇ ଭଉଣୀ । ଘଟଣାକ୍ରମେ ଏମାନେ କଶ୍ୟପଙ୍କ ପତ୍ନୀ ଅର୍ଥାତ୍ ସପତ୍ନୀ । ଏଣୁ ଏମାନଙ୍କ

ଚିତ୍ର : ମଥୁରାରୁ ପ୍ରାପ୍ତ ପ୍ରାଚୀନ ଗରୁଡମୂର୍ତ୍ତି, ଆନୁମାନିକ ଖ୍ରୀ. ୧ମ ଶତାବ୍ଦୀ, ମଥୁରା ସଂଗ୍ରହାଳୟ ।



ମଥୁରାରୁ ପ୍ରାପ୍ତ ପ୍ରାଚୀନ ମୂର୍ତ୍ତିକଳାରେ ଗରୁଡ ଓ ନାଗ ସଂଘର୍ଷ,
ଆନୁମାନିକ ଖ୍ରୀ ୧ମ ଶତାବ୍ଦୀ, ମଥୁରା ସଂଗ୍ରହାଳୟ ।

ମଧ୍ୟରେ ସର୍ବଦା କଳହ ଲାଗି ରହୁଥିଲା । ଏକ ଘଟଣାରେ କଦ୍ରୁ ଚକ୍ରାନ୍ତ କରି ବିନତାଙ୍କୁ ନିଜ ଦାସୀ କରି ରଖିଲେ । ବାଳକ ଗରୁଡ ବଡ ହେବାପରେ ଏ ବିଷୟ ଜାଣି ଦୁଃଖ ପ୍ରକାଶ କରି ମାତାଙ୍କୁ ମୁକ୍ତି ଦେବାପାଇଁ ଚିନ୍ତା କଲେ । ଏକଥା ସେ ନାଗମାନଙ୍କୁ କହିବାରୁ ସେମାନେ କହିଲେ "ତୁମେ ଆମ ପାଇଁ ସ୍ୱର୍ଗରୁ ଅମୃତ ଆଣିଦେଲେ ଆମ ମାତା ତୁମ ମାତାଙ୍କୁ ମୁକ୍ତ କରିଦେବେ ।" ଏହାପରେ ଗରୁଡ ବହୁ ବାଧାବିଘ୍ନ ଅତିକ୍ରମ କରି ଇନ୍ଦ୍ରଙ୍କଠାରୁ ଅମୃତ ଆଣିବା ପାଇଁ ସକ୍ଷମ ହେଲେ ।

ତେବେ, ଇନ୍ଦ୍ର ଚିନ୍ତା କଲେ ଦୁଷ୍ଟ ସର୍ପଗୋଷ୍ଠୀ ଅମୃତ ପାଇଲେ ଅମର ହୋଇ ବହୁ ବିଘ୍ନାତ ସୃଷ୍ଟି କରିବେ । ଏଣୁ, ଇନ୍ଦ୍ର ଏକ କୌଶଳ ଚିନ୍ତା କଲେ, ଯେଉଁଥିରେକି, ଗରୁଡ ଅମୃତ ନେଇ ସର୍ପଙ୍କ ନିକଟରେ ପହଞ୍ଚିବେ, କିନ୍ତୁ ସର୍ପମାନେ ତାହା ପାଇପାରିବେ ନାହିଁ । ଏହା ସେ ଗରୁଡଙ୍କ ସହ ମନ୍ତ୍ରଣା କଲେ । ସେହି ଅନୁସାରେ ଗରୁଡ ଅମୃତ ଭାଣ୍ଡଟି ନେଇ ସର୍ପମାନଙ୍କ ନିକଟରେ ଏକ କୁଶାସନ ଉପରେ ଥୋଇଲେ ଏବଂ ସର୍ପମାନଙ୍କୁ କହିଲେ, "ତୁମ୍ଭେମାନେ ନଦୀରେ ସ୍ନାନକରି ଆସ ଅମୃତ ଭକ୍ଷଣ କରିବ ।" ସର୍ପମାନେ ସ୍ନାନ କରୁଥିବାବେଳେ ଇନ୍ଦ୍ର ଅମୃତ ଭାଣ୍ଡଟି ଅପହରଣକରି ନେଇଆସିଲେ । ସର୍ପମାନେ ଅମୃତଭାଣ୍ଡଟି ନପାଇ ବ୍ୟସ୍ତ ହେବା ସହିତ କୁଶାସନଟିକୁ ଲେହନ କଲେ । ଏହାଦ୍ୱାରା ସେମାନଙ୍କ ଜିହ୍ୱା ଦୁଇଫାଳ ହୋଇଗଲା । ତେବେ, ଗରୁଡ ସ୍ୱର୍ଗରୁ ଅମୃତ ଆଣି ନାଗଙ୍କ ନିକଟରେ ପହଞ୍ଚାଇଥିବାରୁ କଦ୍ରୁ ବିନତାଙ୍କୁ ଦାସୀତ୍ୱରୁ ମୁକ୍ତି ଦେଲେ ।

## ଅନନ୍ତନାଗ

ପୁରାଣର ତଥ୍ୟ ଅନୁଯାୟୀ କଦ୍ରୁଙ୍କ ପ୍ରଥମ ନାଗ ସନ୍ତାନ ଅନନ୍ତ । ଏହି ନାମରୁ ପ୍ରତୀୟମାନ ହୁଏ ଯେ, ଏହାଙ୍କ ଅନ୍ତ ନାହିଁ । ଏ ମହା କୁଣ୍ଡଳିନୀ ଶକ୍ତିର ପ୍ରତୀକ । ଅନନ୍ତ ମାତାଙ୍କୁ ପରିତ୍ୟାଗ କରି 'ବାୟୁ ଭକ୍ଷଣ' ବ୍ରତ ପାଳନ ପୂର୍ବକ ଜଟା, ବଳ୍କଳ ଧାରଣ କରି ଗନ୍ଧମାର୍ଦ୍ଦନ, ବଦରୀକାଶ୍ରମ, ଗୋକର୍ଣ୍ଣିକା, ଇତ୍ୟାଦି ତୀର୍ଥ ଭ୍ରମଣ କରି ଜିତେନ୍ଦ୍ରିୟ ହୋଇ ପ୍ରଗାଢ ତପସ୍ୟାରେ ମଗ୍ନ ହୋଇଥିଲେ । ଏଥିରେ ବ୍ରହ୍ମା ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କୁ ବର ପ୍ରଦାନ କରିଥିଲେ ଯେ ସାରା ବିଶ୍ୱକୁ ଆଚ୍ଛାଦିତ କରି ରହିଥିବା ବିଷ୍ଣୁଙ୍କର ସେ ଛତ୍ର ତଥା ଶଯ୍ୟା ହୋଇ ରହିବେ । ଅନ୍ୟଭାବରେ, ବଳରାମଙ୍କ ଅନ୍ୟ ଏକ ନାମ ଅନନ୍ତ । ଅନନ୍ତ ନାଗ ବଳରାମଙ୍କ ମସ୍ତକ ଉପରେ ନିଜର ଫଣାମାନ ଛତ୍ର ସଦୃଶ ପ୍ରସାରିତକରି ରଖିଥାଆନ୍ତି ।



ନାଗରାଜ ଅନନ୍ତ,ନେପାଳ, ଆନୁମାନିକ ଖ୍ରୀ. ୧୦ମ ଶତାବ୍ଦୀ



କର୍ଣ୍ଣାଟକ, ପଟ୍ଟଦକଲ୍, ମଲ୍ଲିକାର୍ଜୁନ, ମନ୍ଦିର ଗାତ୍ରରେ ବାସୁକୀ ସର୍ପକୁ ରଜ୍ଜୁ କରି ସମୁଦ୍ର ମନ୍ଥନ ହେଉଥିବାର ଦୃଶ୍ୟ, ଖ୍ରୀ ୮ମ ଶତାବ୍ଦୀ

## ବାସୁକି

କଶ୍ୟପ ଓ କଦ୍ରୁଙ୍କ ଦ୍ୱିତୀୟ ନାଗ ସନ୍ତାନ ହେଉଛନ୍ତି ବାସୁକି । ନିଜ ସହସ୍ର ଫଣାର ମସ୍ତକ ଉପରେ ସେ ପୃଥିବୀ ଧାରଣ କରିଛନ୍ତି । ଦେବତା ଓ ଅସୁରମାନଙ୍କ ସମୁଦ୍ର ମନ୍ଥନବେଳେ ବାସୁକିଙ୍କୁ ରଜ୍ଜୁ ରୂପେ ବ୍ୟବହାର କରିଥିଲେ । ବନ୍ଦୀଗୃହରେ ଶ୍ରୀକୃଷ୍ଣ ବସୁଦେବଙ୍କ ପୁତ୍ରଭାବେ ଦେବକୀଙ୍କ ଗର୍ଭରୁ ଜାତ ହେଲେ । ନବଜାତ ପୁତ୍ରର ପ୍ରାଣ ରକ୍ଷା କରିବା ନିମନ୍ତେ ବସୁଦେବ କୃଷ୍ଣଙ୍କୁ ଏକ ଟୋକେଇରେ ରଖି, ମସ୍ତକରେ ଧରି ବର୍ଷା ରାତ୍ରିରେ ଯମୁନା ପାରହେବାବେଳେ ବସୁଦେବଙ୍କ ମସ୍ତକ ଉପରେ ବାସୁକି ନିଜର ସହସ୍ରଫଣା ପ୍ରସାରିତ କରି କୃଷ୍ଣଙ୍କୁ ସୁରକ୍ଷା ଦେଇଥିଲେ । .ଏହା ବ୍ୟତୀତ ଜନ୍ମେଜୟଙ୍କ ସର୍ପଯଜ୍ଞବେଳେ ସର୍ପକୁଳକୁ ରକ୍ଷା କରିବା ନିମନ୍ତେ ବାସୁକି ନିଜ ଭଣଜା ଆସ୍ତିକକୁ ଜନ୍ମେଜୟଙ୍କ ନିକଟକୁ ପଠାଇଥିଲେ ।

## ତକ୍ଷକ

ଅଷ୍ଟନାଗଙ୍କ ମଧ୍ୟରୁ ଅନ୍ୟତମ । ତକ୍ଷକ ଖାଣ୍ଡବ ବନରେ ବାସ କରନ୍ତି । ବ୍ରହ୍ମଶାପରେ, ଅଭିଶପ୍ତ ରାଜା ପରୀକ୍ଷିତଙ୍କୁ ସେ ଦଂଶନ କରିବା ଦ୍ୱାରା ତାଙ୍କର ମୃତ୍ୟୁ ହୋଇଥିଲା । ମହାଭାରତରେ ତକ୍ଷକଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକାମାନ ରହିଛି । ଏହାର ଏକ ବିଷୟ ଏହିକି, ଅର୍ଜୁନଙ୍କ ଖାଣ୍ଡବବନ ଦହନବେଳେ ତକ୍ଷକଙ୍କ ବହୁତ କ୍ଷତି ହୋଇଥିଲା । ଏଣୁ ସେ ଅର୍ଜୁନଙ୍କ ଉପରେ ପ୍ରତିଶୋଧ ନେବାପାଇଁ ସୁଯୋଗ ଖୋଜୁଥିଲେ । ମହାଭାରତ ଯୁଦ୍ଧବେଳେ ତକ୍ଷକ ଦୁର୍ଯ୍ୟୋଧନଙ୍କ ନିକଟରେ ପହଞ୍ଚି କହିଲେ, " ମୋତେ ତୀର କରି ଅର୍ଜୁନଙ୍କ ରଥକୁ କ୍ଷେପଣ କରନ୍ତୁ । ମୁଁ କୃଷ୍ଣ ଅର୍ଜୁନଙ୍କ ସମେତ ସମସ୍ତ ରଥକୁ ଗ୍ରାସ କରି ଆପଣଙ୍କ ନିକଟକୁ ଫେରିବି ।" ଦୁର୍ଯ୍ୟୋଧନ ତକ୍ଷକଙ୍କ

କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ ନ କରିବା ସତ୍ତ୍ୱେ ସେ ତକ୍ଷକଙ୍କୁ ତୀର କରି କ୍ଷେପଣ କଲେ । କୃଷ୍ଣ ଅର୍ଜୁନଙ୍କ ରଥର କଳସ ଉପରେ ଥିବା ହନୁମାନ ଏହା ଜାଣିପାରି ରଥକୁ ପାତାଳୀ କରିଦେଲେ । ତେବେ, ଭୂମି ଉପରେ ଥିବା ରଥର ପତାକାଟି ତକ୍ଷକ ଉଦରସ୍ଥ କରି ଦୁର୍ଯ୍ୟୋଧନଙ୍କ ନିକଟକୁ ଫେରିଲେ,କିନ୍ତୁ ସେ ଭାବିଥିଲେ, ସମ୍ପୂର୍ଣ୍ଣ ରଥକୁ ସେ ଗ୍ରାସ କରିଛି । ଦୁର୍ଯ୍ୟୋଧନ ତକ୍ଷକଙ୍କୁ ଗ୍ରାସ କରିଥିବା ପଦାର୍ଥ ଉଦ୍‌ଗାର କରିବା ନିମନ୍ତେ କହନ୍ତେ, ତକ୍ଷକ କେବଳ ପତାକା ଗୋଟିକ ଉଦ୍‌ଗାରିଲେ । ଦୁର୍ଯ୍ୟୋଧନ ଏଥିରେ କ୍ରୋଧାନ୍ୱିତ ହୋଇ ତକ୍ଷକଙ୍କୁ ଭର୍ତ୍ସନା କରିଥିଲେ ।

## ନାଗ କର୍କୋଟକ

ମହାଭାରତର ଆଖ୍ୟାନ ଅନୁଯାୟୀ ଏକଦା କର୍କୋଟକ ନାଗ ଏକ ଘଟଣାରେ ଦେବର୍ଷି ନାରଦଙ୍କୁ ପ୍ରବଞ୍ଚନା କଲେ । ନାରଦ ଏଥିରେ କ୍ରୋଧିତ ହୋଇ କର୍କୋଟକଙ୍କୁ ଅଭିଶାପ ଦେଲେ, " ତୁମେ ସ୍ଥବିର ହୋଇ ଏହି ବନରେ ପଡିରହିବ । ଯେତେବେଳେ ପୁଣ୍ୟଶ୍ଳୋକ ନଳରାଜା ତୁମକୁ ସ୍ପର୍ଶ କରିବେ, ସେତେବେଳେ ତୁମେ ଶାପମୁକ୍ତ ହେବ ।" କଳି ଦ୍ୱାରା ପ୍ରପୀଡିତ ହୋଇ ନଳରାଜା ବୁଲି ବୁଲି ସେହି ବନରେ ପହଞ୍ଚିଲେ । ସେତିକିବେଳେ ବନରେ ଦାବାନଳ ବ୍ୟାପିଥିଲା । ଅଗ୍ନି ମଧ୍ୟରୁ କର୍କୋଟକ "ମୋତେ ରକ୍ଷାକର ନଳ" ବୋଲି ବାରମ୍ବାର ଚିତ୍କାର କରୁଥିଲେ । ନଳ ଏହା ଶୁଣି ଅଗ୍ନି ମଧ୍ୟକୁ ପ୍ରବେଶ କରି ତାଙ୍କୁ ଉଦ୍ଧାର କଲେ । ଏଥିରେ ଶାପମୁକ୍ତ ହୋଇ ନଳଙ୍କୁ ନିଜର ପରିଚୟ ଦେବା ସଙ୍ଗେ ସଙ୍ଗେ ତାଙ୍କୁ ଦଂଶନ କଲେ । ଏଥିରେ ନଳଙ୍କ ଶରୀର କଦାକାର ହୋଇଗଲା । କର୍କୋଟକ ନଳଙ୍କୁ କହିଲେ, " ମୋର ଦଂଶନରେ ଆପଣ କଦାକାର ହେବା ଦ୍ୱାରା ଶତ୍ରୁମାନେ ଆପଣଙ୍କୁ ଚିହ୍ନି ପାରିବେ ନାହିଁ । ଆପଣ ଏ ଦୁର୍ଦ୍ଦିନରେ ନିରାପଦ ରହିବେ । ମୁଁ ଆପଣଙ୍କୁ ଦୁଇଟି ପାଟବସ୍ତ୍ର, ପାଟପତନୀ ଦେଉଛି, ଏହା ଆପଣଙ୍କ ଡାହାଣ ହସ୍ତ ନଖକୋଣରେ ରହିଥିବ । ଆବଶ୍ୟକ ସମୟରେ ଆପଣ ଚାହିଁଲେ ଏହା ବାହାରିବ । ଆପଣ ତାହା ପରିଧାନ କଲେ ଆପଣଙ୍କ ପୂର୍ବ ରୂପ ଫେରି ପାଇବେ । ଆପଣ ବର୍ତ୍ତମାନ ଅଯୋଧ୍ୟା ନଗରୀ ଯାଆନ୍ତୁ । ସେଠାରେ ରାଜା ଋତୁପର୍ଣ୍ଣଙ୍କ ଠାରୁ ଅକ୍ଷକ୍ରୀଡା ଶିକ୍ଷା କରନ୍ତୁ । ଏହାଦ୍ୱାରା ଆପଣ କଳିର ଉତ୍ପୀଡନରୁ ମୁକ୍ତି ପାଇବେ ।" ଏହା କହି କର୍କୋଟକ ସ୍ୱର୍ଗକୁ ଗମନ କଲେ ।

## ନାଗ ପୁଣ୍ଡରୀକ

ରାଜା ଜନ୍ମେଜୟ ସର୍ପଯଜ୍ଞ ଆୟୋଜନ କରିଥିବାବେଳେ ନିଜ ପ୍ରାଣ ରକ୍ଷା କରିବା ନିମନ୍ତେ ପୁଣ୍ଡରୀକ ନାଗ କାଶୀ ବିଶ୍ୱନାଥଙ୍କ କ୍ଷେତ୍ରରେ ଶିବଙ୍କ ଶରଣାପନ୍ନ

ହେଲେ । ସେ ସେଠାରେ ବ୍ରାହ୍ମଣ ବେଶରେ ଜଣେ ବ୍ରାହ୍ମଣଙ୍କ ଘରେ ଆଶ୍ରୟ ନେଲେ । ବ୍ରାହ୍ମଣ ପୁଣ୍ଡରୀକଙ୍କ ରୂପ ଓ ଗୁଣରେ ମୁଗ୍ଧ ହୋଇ ନିଜ କନ୍ୟାଙ୍କୁ ପୁଣ୍ଡରୀକଙ୍କ ସହିତ ବିବାହ ଦେଲେ । କିଛି କାଳ ଅନ୍ତେ ପୁଣ୍ଡରୀକଙ୍କ ସ୍ତ୍ରୀ, ବ୍ରାହ୍ମଣ କନ୍ୟା ଗର୍ଭବତୀ ହେଲେ । ଦିନେ ରାତ୍ରରେ ବ୍ରାହ୍ମଣ କନ୍ୟା ଦେଖିଲେ ଶୋଇଥିବା ତାଙ୍କ ସ୍ୱାମୀଙ୍କ ମୁଖରୁ ବିଷାକ୍ତ ଗନ୍ଧ ବାହାରୁଛି ଏବଂ ତାଙ୍କ ଜିଭଟି ଦୁଇଫାଳ ହୋଇଛି । ଏହି ବିଷୟ ସେ ସ୍ୱାମୀଙ୍କୁ ପଚାରିବାରେ ପୁଣ୍ଡରୀକ ମିଥ୍ୟା ନକହି, ସେ ଜଣେ 'ନାଗ' ବୋଲି ସ୍ୱୀକାର କଲେ । ଏହାପରେ ସ୍ୱାମୀ ସ୍ତ୍ରୀ କାଶୀଧାମ ତ୍ୟାଗ କରିଥିଲେ । ସେମାନଙ୍କ ଯାତ୍ରାବେଳେ ସ୍ୱତିଆମ୍ବା ନାମକ ଗ୍ରାମରେ ତାଙ୍କର ଏକ ପୁତ୍ର ଜାତ ହୋଇଥିଲା । ସେହି ପୁତ୍ରର ନାମ ଥିଲା ଫଣିମୁକୁଟ ।

## ନାଗକନ୍ୟା ଉଲୁପୀ ଓ ଚିତ୍ରାଙ୍ଗଦା

ନାଗକନ୍ୟା ଉଲୁପୀ, ଐରାବତ କୁଳର କୌରବ୍ୟନାଗଙ୍କ କନ୍ୟା । ବନବାସବେଳେ ଅର୍ଜୁନ ଗଙ୍ଗାରେ ସ୍ନାନ କରି ତର୍ପଣ କରୁଥିବାବେଳେ ଉଲୁପୀ ଅର୍ଜୁନଙ୍କ ରୂପରେ ମୁଗ୍ଧ ହୋଇଥିଲେ । ସେ ଅର୍ଜୁନଙ୍କୁ ନାଗଲୋକକୁ ନେଇ ତାଙ୍କ ସହିତ ବିବାହ କଲେ । ନାଗଲୋକରେ ଏମାନଙ୍କ ପରିଣୟ କ୍ରିୟା ସମ୍ପାଦିତ ହୋଇଥିଲା । ସୂଚନାଯୋଗ୍ୟ ଯେ, ଅର୍ଜୁନଙ୍କ ଅନ୍ୟତମା ପତ୍ନୀ ଚିତ୍ରାଙ୍ଗଦା ମଧ ମଣିପୁର ନାଗବଂଶୀ ରାଜକନ୍ୟା ଥିଲେ ।

## ନାଗ ଧୃତରାଷ୍ଟ୍ର

ଅଥର୍ବବେଦ (୮,୧୦)ରେ ତକ୍ଷକ, ବୈଶାଲ୍ୟ ଓ ଧୃତରାଷ୍ଟ୍ର ଐରାବତ ନାମଧେୟ ସର୍ପମାନଙ୍କ ସମ୍ପର୍କରେ ଉଲ୍ଲେଖ ଅଛି । ମୁଖ୍ୟ ମହାଭାରତରେ ସର୍ପରାଜ ଧୃତରାଷ୍ଟ୍ରଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ନଥିବାବେଳେ ଜୈମିନି ଭାରତର ବର୍ଣ୍ଣନାରେ ଏହାଙ୍କ ବିଷୟ ରହିଛି । ଅଶ୍ୱମେଧ ଯଜ୍ଞର ଅଶ୍ୱକୁ ନେଇ ଅର୍ଜୁନ ଦେଶ ଦେଶ ଭ୍ରମଣ କରୁଥିବାବେଳେ ନିଜପୁତ୍ର ( ମାତା ଚିତ୍ରାଙ୍ଗଦା) ବବ୍ରୁବାହନଙ୍କ ଦ୍ୱାରା ଯୁଦ୍ଧରେ ପରାଜିତ ହୋଇ ପ୍ରାଣତ୍ୟାଗ କଲେ । ଏଥିରେ ଚିତ୍ରାଙ୍ଗଦା ଓ ଅର୍ଜୁନଙ୍କ ଅନ୍ୟତମା ପତ୍ନୀ ନାଗକନ୍ୟା ଉଲୁପୀ କ୍ରନ୍ଦନ କଲେ । ବବ୍ରୁବାହନ ଏଥିରେ ବ୍ୟଥିତ ହୋଇ ପିତା ଅର୍ଜୁନଙ୍କୁ ବଞ୍ଚାଇବାର ଉପାୟ ମାତାଙ୍କୁ ପଚାରିଲେ । ମାତା କହିଲେ ବାସୁକିଙ୍କଠାରୁ ନାଗମଣି ଆଣି ଅର୍ଜୁନଙ୍କୁ ସ୍ପର୍ଶ କରାଇଲେ ସେ ବଞ୍ଚିବେ । ବବ୍ରୁବାହନ ବାସୁକୀଙ୍କ ମଣି ମାଗିବାବେଳେ ସର୍ପ ଧୃତରାଷ୍ଟ୍ର ମଣି ନଦେବା ନିମନ୍ତେ ବାସୁକିଙ୍କୁ ପ୍ରବର୍ତ୍ତାଇଲେ, ଏବଂ ନିଜ ଦୁଇ ସର୍ପପୁତ୍ରଙ୍କୁ ପଠାଇ ଅର୍ଜୁନଙ୍କ ମସ୍ତକଟି କାଟି

ଘେରିଆସିଲେ । ଶ୍ରୀକୃଷ୍ଣ ଏହା ଜାଣିପାରି ଧୃତରାଷ୍ଟ୍ରଙ୍କ ଦୁଇ ସର୍ପପୁତ୍ର  ସହିତ ଯୁଦ୍ଧ କରି ସେମାନଙ୍କୁ ବଧ କଲେ । ଏଣେ ବଭ୍ରୁବାହନ ବାସୁକିଙ୍କ ସହିତ ଯୁଦ୍ଧ କରି ମଣିଟି ପାଇଲେ । ଶ୍ରୀକୃଷ୍ଣ ଅର୍ଜୁନଙ୍କ ଶରୀରରେ  ନାଗମଣି ସ୍ପର୍ଶ କରାଇବାରୁ ଅର୍ଜୁନ ପ୍ରାଣ ଲାଭକଲେ ।

## କାଳୀୟ  ନାଗ

କାଳୀୟ ନାଗଙ୍କ ମୂଳ ବାସସ୍ଥାନ ସମୁଦ୍ର । ତେବେ, ସେ ବ୍ରଜଧାମର ଯମୁନା ନଦୀର ଏକ ଗଭୀର ସ୍ଥାନରେ ରହୁଥିଲେ । ତାଙ୍କ ତୀବ୍ର ବିଷରେ ସେହିଜଳ ବିଷାକ୍ତ ହୋଇପଡିଥିଲା । ଏଣୁ ଲୋକେ ଭୟରେ ସେ ପାଣି ସ୍ପର୍ଶ କରୁନଥିଲେ । ଥରେ ଶ୍ରୀକଷ୍ଣ ଯମୁନା ନଦୀ କୂଳରେ ଭ୍ରମଣ କରୁ କରୁ କାଳୀୟ ନାଗର ବିଷାକ୍ତ ଗଣ୍ଡକୁ ଦେଖିଲେ । ସେ ଗୋଟିଏ କଦମ୍ବ ଗଛରେ ଚଢି ଯମୁନାକୁ ଲମ୍ଫଦେଲେ । କାଳୀୟ ମହାକୋପରେ ନିଜ କୁଣ୍ଡଳୀରେ କୃଷ୍ଣଙ୍କୁ ବାନ୍ଧି ପକାଇଲା । ଶ୍ରୀକୃଷ୍ଣ କାଳୀୟର ବନ୍ଧନରୁ ମୁକ୍ତ ହୋଇ ତାଙ୍କ ମସ୍ତକ ଉପରକୁ ଉଠିଗଲେ ଏବଂ କର୍କଶ ଭାବେ ନୃତ୍ୟ କଲେ । କାଳୀୟ ଶ୍ରୀକୃଷ୍ଣଙ୍କ ପାଦର ଆଘାତ ସହିନପାରି ଶରଣ ପଶିଲେ । ନାଗ ପତ୍ନୀମାନେ ଶ୍ରୀକୃଷ୍ଣଙ୍କୁ ବନ୍ଦନା କଲେ । ଶ୍ରୀକୃଷ୍ଣ କାଳୀୟକୁ କହିଲେ, " ତୁ ଗରୁଡକୁ ଭୟ କରି ସମୁଦ୍ର ଛାଡି ଯମୁନାକୁ ଆସିଛୁ । ବର୍ତ୍ତମାନ ମୋ ପଦଚିହ୍ନ ତୋର ମସ୍ତକରେ ରହିଲା, ଏଥର ଗରୁଡ ତୋର କୌଣସି କ୍ଷତି କରିବ ନାହିଁ । ଏଣୁ ତୁ ପୁନଶ୍ଚ ସମୁଦ୍ରକୁ ଚାଲିଯାଅ ।"



ଭୁବନେଶ୍ୱର, କୌଣସି ପ୍ରାଚୀନ ମନ୍ଦିର ଗାତ୍ରର କାଳୀୟଦଳନ ଦୃଶ୍ୟ,
ଖ୍ରୀ. ୭ମ ଶତାବ୍ଦୀ, ଓଡିଶା ରାଜ୍ୟ ସଂଗ୍ରହାଳୟ ।



ଦକ୍ଷିଣ ଭାରତୀୟ ନାଗମୂର୍ତ୍ତି

## ଜନ୍ମେଜୟଙ୍କ ସର୍ପଯଜ୍ଞ

ମହାଭାରତର ବର୍ଣ୍ଣନା ଅନୁଯାୟୀ, ରାଜା ଜନ୍ମେଜୟ ପରୀକ୍ଷିତଙ୍କ ପୁତ୍ର ଓ ଅର୍ଜୁନଙ୍କ ପ୍ରପୌତ୍ର ଅଟନ୍ତି । ସେ ଜଣେ ଧର୍ମପ୍ରାଣ ପରାକ୍ରମୀ ରାଜା । ଏକ ଘଟଣାରେ ତାଙ୍କ ପିତା ପରୀକ୍ଷିତଙ୍କୁ ତକ୍ଷକ ନାମକ ନାଗ ଦଂଶନ କରିବା ଦ୍ୱାରା ତାଙ୍କର ପ୍ରାଣନାଶ ହୋଇଥିଲା । ପିତାଙ୍କ ମୃତ୍ୟୁର ପ୍ରତିଶୋଧ ନେବା ନିମନ୍ତେ ପୁତ୍ର ଜନ୍ମେଜୟ ଏକ ସର୍ପଯଜ୍ଞର ଆୟୋଜନ କଲେ । ସର୍ପକୁଳକୁ ବିନାଶ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ଯଜ୍ଞରେ ଆହୁତି ଦେବାମାତ୍ରେ ସର୍ପମାନେ ଯଜ୍ଞକୁଣ୍ଡରେ ପଡି ମୃତ୍ୟୁବରଣ କଲେ । ତକ୍ଷକ ଏହା ଜାଣି ପ୍ରାଣରକ୍ଷା ନିମନ୍ତେ ଇନ୍ଦ୍ରଙ୍କ ଶରଣ ନେଲେ । ଏହା ସର୍ପକୁଳରେ ଆତଙ୍କ ସୃଷ୍ଟି କଲା । ସର୍ପମାନଙ୍କୁ ରକ୍ଷା କରିବା ନିମନ୍ତେ ବାସୁକି ନିଜ ଭଣଜା ଋଷି ଆସ୍ତିକଙ୍କୁ ଜନ୍ମେଜୟଙ୍କ ନିକଟକୁ ପଠାଇଲେ । ଆସ୍ତିକ ଜନ୍ମେଜୟଙ୍କୁ ସର୍ପଯଜ୍ଞ ବନ୍ଦ କରିବା ନିମନ୍ତେ ଅନୁରୋଧ କଲେ । ତେବେ, ଜନ୍ମେଜୟ କହିଲେ, " ତକ୍ଷକ ନାଗର ମୃତ୍ୟୁ ନହେବା ପର୍ଯ୍ୟନ୍ତ ସେ ଯଜ୍ଞ ବନ୍ଦ କରିବେ ନାହିଁ । ସେ କ୍ରୋଧାନ୍ୱିତ ହେଲେ ଏବଂ ପୁରୋଧାଙ୍କୁ ନିର୍ଦ୍ଦେଶ ଦେଲେ, ସେମାନେ ଇନ୍ଦ୍ରଙ୍କ ସହିତ ତକ୍ଷକଙ୍କ ନାମ ଉଚ୍ଚାରଣ କରି ଯଜ୍ଞରେ ଆହୁତି ଦିଅନ୍ତେ, ଏହାଦ୍ୱାରା ଇନ୍ଦ୍ର ଓ ତକ୍ଷକ ଉଭୟେ ଯଜ୍ଞକୁଣ୍ଡ ଆଡକୁ ଟାଣି ହୋଇ ଆସିଲେ । ଇନ୍ଦ୍ର ନିଜ ପ୍ରାଣରକ୍ଷା ନିମନ୍ତେ ତକ୍ଷକକୁ ତ୍ୟାଗକଲେ । ଏହି ଘଡିସନ୍ଧି ମୁହୂର୍ତ୍ତରେ ଆସ୍ତିକ ଜନ୍ମଜେୟଙ୍କୁ ବୁଝାଇଲେ ଯେ, ସର୍ପକୁଳ ବିନାଶ ହେଲେ ଜଗତର ବହୁ କ୍ଷତି ଘଟିବ । ଏହା ସହିତ ଆସ୍ତିକ ବେଦପାଠ କରି ଜନ୍ମଜେୟଙ୍କୁ ସନ୍ତୁଷ୍ଟ କଲେ । ଏହାଦ୍ୱାରା ସର୍ପଯଜ୍ଞ ସମାପନ ହେଲା ଓ ସର୍ପକୁଳ ରକ୍ଷା ପାଇଲା ।

ଏଥିରେ ସର୍ପମାନେ ଆସ୍ତିକଙ୍କୁ ଆର୍ଶିବାଦ ଓ ବର ଦେଇଥିଲେ ଯେ "ଯେଉଁ ବ୍ୟକ୍ତି ଆସ୍ତିକ ନାମ ଉଚ୍ଚାରଣ କରିବ ତାଙ୍କୁ ସର୍ପ ଦଂଶନ କରିବେ ନାହିଁ"।

## ନାଗମାତା ମନସା

ଅନେକ ପୁରାଣରେ ମନସାଙ୍କ ବିଷୟ ଉଲ୍ଲେଖ ଥିବାବେଳେ ଭାରତର ବିଭିନ୍ନ ଆଞ୍ଚଳିକ ଭାଷାରେ ଲିଖିତ ବ୍ରତ କଥାମାନଙ୍କରେ ମଧ ତାଙ୍କ ବିଷୟ ଦେଖିବାକୁ ମିଳେ। ସର୍ପଦେବୀ ବା ବୈଦିକ 'ସର୍ପରାଜ୍ଞୀ'ଙ୍କ ବିଷୟ ଋକବେଦ (୧୦-୧୮୯)ରେ, ଐତରେୟ ବ୍ରାହ୍ମଣ(୫-୨୪-୪) ଓ ଶତପଥ ବ୍ରାହ୍ମଣ (୧-୪-୨୯)ରେ ଉଲ୍ଲେଖ ଅଛି। ଶାୟଣାଚାର୍ଯ୍ୟଙ୍କ ବୈଦିକ ଭାଷ୍ୟ ଅନୁଯାୟୀ ସର୍ପରାଜ୍ଞୀ ହେଉଛନ୍ତି ଭୂଦେବୀ, ଯାହାଙ୍କଠାରେ ବ୍ରହ୍ମଜ୍ଞାନ ବିଦ୍ୟମାନ। ମହିଧରଙ୍କ ଟିକା ଅନୁସାରେ 'ଭୂଦେବୀ' ସର୍ପମାତା କଦ୍ରୁଙ୍କର ଅନ୍ୟ ଏକ ନାମ। ବ୍ୟାକରଣ ଅନୁଯାୟୀ 'ମନସା' ଶବ୍ଦଟି ସିଦ୍ଧାନ୍ତ କୌମୁଦୀରେ 'ଆଲୁକ୍-ସମାସ' ଯଥା, ମନସା-ସୃଷ୍ଟିଦେବୀ ଅଟନ୍ତି। ତେବେ, ବ୍ରହ୍ମବୈବର୍ତ୍ତ ପୁରାଣରେ, କଶ୍ୟପ ମହର୍ଷିଙ୍କ ମାନସରୁ ସୃଷ୍ଟି ହୋଇଥିବାରୁ ଦେବୀଙ୍କ ନାମ 'ମନସା'। ଏହା ବ୍ୟତୀତ ଆଞ୍ଚଳିକ ବ୍ରତକଥାମାନଙ୍କରେ ତାଙ୍କୁ ଶିବଙ୍କ ମାନସ କନ୍ୟା, ଶିବଙ୍କ ଭଗିନୀ, ବାସୁକିସର୍ପଙ୍କ ଭଗିନୀ ଇତ୍ୟାଦି ଭାବରେ ବର୍ଣ୍ଣିତ ହୋଇଛି। ଏଥିରୁ ପ୍ରତୀୟମାନ ହୁଏ ଯେ, 'ସର୍ପମାତା' ବା 'ନାଗମାତା'ଙ୍କ ପରିକଳ୍ପନା ବୈଦିକ ଯୁଗରୁ ସୃଷ୍ଟି ହୋଇଛି।



ପଶ୍ଚିମବଙ୍ଗ, ହସ୍ତରେ ଶିଶୁ ଓ ସିଜୁ ବୃକ୍ଷ ଧାରଣ କରିଥିବା ନାଗମାତା ମନସା, (ଧାତବ ପ୍ରତିମା), ଖ୍ରୀ ୧୦ମ ଶତାବ୍ଦୀ

ଭାରତର ସର୍ବତ୍ର ମନସା ପୂଜାର ଲୋକପ୍ରିୟତା ରହିଛି । ବୌଦ୍ଧମାନେ ନାଗମାତାଙ୍କୁ 'ଜାଙ୍ଗୁଲାଇ' 'ଜାଗୁଳାଇ' ବା ଜଙ୍ଗଲଦେବୀ ଭାବେ ଓ ଆନ୍ଧ୍ରର ତେଲୁଗୁମାନେ ଏହି ଦେବୀଙ୍କୁ 'ମଞ୍ଚାମ୍ମା' ନାମରେ ପୂଜା କରନ୍ତି । ଅର୍ଥାତ୍, କେତେକ ସ୍ଥଳେ ଦେବୀ ଭିନ୍ନ ନାମରେ ମଧ ପରିଚିତା । ବିଭିନ୍ନ ପ୍ରଦେଶର ବ୍ରତକଥାର ବର୍ଣ୍ଣନା ବ୍ୟତୀତ ମନସାଙ୍କ ପୂଜା ନିମନ୍ତେ କେତେକ ସଂସ୍କୃତ ଧ୍ୟାନ ମଧ ଉଲ୍ଲେଖ ଅଛି । ତାହା ମଧ୍ୟରୁ ଏକ ଲୋକପ୍ରିୟ ଧ୍ୟାନ ନିମ୍ନରେ ଉଦ୍ଧୃତ ହେଲା ।

ଦେବୀ ମନ୍ୟା ମହିନାଂ ଶଶଧର ବଦନାଂ
ଚାରୁକାନ୍ତିଂ ବନାନ୍ୟାଂ ।
ହଂସାରୁଢା ମୁଦାର ମରୁଣିତ ବସନାଂ
ସର୍ବଜାଂ ସର୍ବ ଦୈବ ।।
ସ୍ମେରାସ୍ୟାଂ ମଣ୍ଡିତାଙ୍ଗୀ କନକମଣି ଗଣୈ
ର୍ନାଗ ରତ୍ନୈ ରନେକୈ ।
ର୍ବନ୍ଦେଽହଂ ସାଷ୍ଟ ନାମା ମୁରୁକୁଚ ଯୁଗଳା
ଯୋଗନୀଂ କାମରୂପାମ୍ ।।

ମନସାଙ୍କ ପୂଜାରେ ସାଧାରଣତଃ ଏହି ଧ୍ୟାନଟି ବ୍ୟବହାର ହେଉଥିଲେ ହେଁ, ଏଥିରେ ଦେବୀଙ୍କ ହଂସ ବାହାନ ବୋଲି ଉଲ୍ଲେଖ ଅଛି ଏବଂ ଏଥିରେ 'ମନସା' ଶବ୍ଦ ବ୍ୟବହାର ହୋଇନାହିଁ । ଏଣୁ ଏହା ବ୍ରାହ୍ମଣୀଙ୍କ ଧ୍ୟାନ ବୋଲି କେତେକ ମତ ଦିଅନ୍ତି । ପୁନଶ୍ଚ ଭାରତର କୌଣସି ମନସା ମୂର୍ତ୍ତି ସହିତ ହଂସ ବାହାନ ଦେଖାଯାଏନାହିଁ । ଏହି ପରିସ୍ଥିତିରେ ଶ୍ଳୋକଟି ନାଗମାତା ମନସାଙ୍କ ପାଇଁ କେତେଦୂର ପ୍ରଯୁଜ୍ୟ , ତାହା ପ୍ରଶ୍ନବାଚୀ ସୃଷ୍ଟି କରେ । ବ୍ରହ୍ମବୈବର୍ତ୍ତ ପୁରାଣରେ ମନସାଙ୍କୁ ନାଗେନ୍ଦ୍ର ବାହନା ଏବଂ ନାଗେଶ୍ୱରୀ ବୋଲି ସମ୍ବୋଧନ କରାଯାଇଛି । ଏହି ଧ୍ୟାନଟି ନିମ୍ନରେ ପ୍ରଦତ୍ତ ହେଲା ।

ଚାରୁ ଚମ୍ପକ ବର୍ଣ୍ଣାଭାଂ ସର୍ବାଙ୍ଗ ସୁମନୋହରମ୍ ।
ଋଷିଦ୍ଧାସ୍ୟ ପ୍ରସନ୍ନାସ୍ୟାଂ ଶୋଭିତାଂ ସୂକ୍ଷ୍ମ ବସସା ।।
କବରିଭାର ଶୋଭାଢ୍ୟାଂ ରତ୍ନାଭରଣ ଭୂଷିତାମ୍ ।
ସର୍ବଭୟପ୍ରଦାଂ ଦେବୀ ଭକ୍ତାନୁଗ୍ରହ କାତରାମ୍ ।।
ସର୍ବବିଦ୍ୟାଂପ୍ରଦା ଶାନ୍ତା ସର୍ବବିଦ୍ୟା ବିଶାରଦମ୍ ।
ନଗେନ୍ଦ୍ର ବାହିନୀଂ ଦେବୀଂ ଭଜେ ନାଗେଶ୍ୱରୀଂ ପରମା ।।

## ମୂର୍ତ୍ତିକଳାରେ ମନସା

ମୂର୍ତ୍ତିକଳାରେ ମନସା ଦ୍ୱିଭୂଜା କିମ୍ବା ଚର୍ତୁଭୂଜା । ତାଙ୍କ ହସ୍ତରେ ସାଧାରଣତଃ ପୂର୍ଣ୍ଣକୁମ୍ଭ କିମ୍ବା ଅମୃତ କଳସ, ଜପମାଳ ଓ କେତେକସ୍ଥଳେ (ବିଷ ହରଣର ସଙ୍କେତ ସ୍ୱରୂପ) ଅରଖ ଫୁଲ କିମ୍ବା ସିଜୁ ଡାଳ ଧାରଣ କରିଥିବା ଦେଖାଯାଏ । ଓଡିଶାରେ ଦେଖାଯାଉଥିବା ଅଧିକାଂଶ ମନସା ମୂର୍ତ୍ତି ଦ୍ୱିଭୂଜା ଅଟନ୍ତି । ଏଥିରେ ଦେବୀଙ୍କ ଆସନ ମୂର୍ତ୍ତି ବା ବସିଥିବା ଭଙ୍ଗୀ ଓ ସ୍ଥାନକ ବା ଦଣ୍ଡାୟମାନ ମୂର୍ତ୍ତି ଦେଖିବାକୁ ମିଳେ । ଏହି ପ୍ରକାର ପ୍ରତ୍ୟେକ ମୂର୍ତ୍ତିର ମସ୍ତକ ଉପରେ ନାଗର ପଞ୍ଚଫଣା କିମ୍ବା ସପ୍ତଫଣା ପ୍ରସାରିତ ହୋଇ ରହିଥାଏ ।

ଓଡିଶା ରାଜ୍ୟ ସଂଗ୍ରହାଳୟ, ପ୍ରାଚୀ ନଦୀ ଅବବାହିକାର ଅମରେଶ୍ୱର, ପୁରୀ ଜିଲ୍ଲାର ଭିଲ୍ଲିଗ୍ରାମ, କଟକ ଜିଲ୍ଲାର ବଟେଶ୍ୱର ଓ କୋଣାର୍କ ନିକଟ ବୟାଳିଶିବାଟି ଠାରେ ମନସାଙ୍କ ପଦ୍ମାସନ ଭଙ୍ଗୀରେ ବସିଥିବା ପ୍ରତିମା ରହିଛି । ଏହିସବୁ ରଚନାରେ ଦେବୀ ବକ୍ଷ ନିକଟରେ, ଦୁଇ ହସ୍ତରେ, ଅମୃତକଳସଟିକୁ ଧାରଣ କରିଥିବାବେଳେ ତାଙ୍କ ମସ୍ତକ ଉପରେ ସର୍ପଫଣାଗୁଡିକ ପ୍ରସାରିତ ହୋଇ ରହିଛି । କେତେକ ସ୍ଥାନରେ



ମନସା, ବୈତାଳ ଦେଉଳ, ଖ୍ରୀ. ୮ମ ଶତାବ୍ଦୀ, ଭୁବନେଶ୍ୱର



ନାଗମାତା ମୂର୍ତ୍ତି, ୧୦ମ ଶତାବ୍ଦୀ, ଓଡିଶା ରାଜ୍ୟ ସଂଗ୍ରହାଳୟ

ଦେବୀ ଗୋଟିଏ ହସ୍ତରେ ଅମୃତ କଳସ ଧାରଣ କରି ଅନ୍ୟ ହସ୍ତରେ ବରଦ କିମ୍ବା ଅଭୟ ମୁଦ୍ରା ପ୍ରଦର୍ଶନ କରିଥାଆନ୍ତି । ଏହି ପ୍ରକାର ରଚନା ବଟେଶ୍ୱର ଓ ବାଲେଶ୍ୱର ଜିଲ୍ଲାର ଶେରଗଡଠାରେ ଦେଖିବାକୁ ମିଳେ । ଏହା ବ୍ୟତୀତ ଚଉରାଶି ଗ୍ରାମର ମନସାଙ୍କ ଆସନ ତଳେ ସାତଗୋଟି ନିଧିଭାଣ୍ଡ ସ୍ଥାନିତ ହୋଇଛି । କାରଣ ନାଗମାନେ ଧନସମ୍ପଦ ଦାତା ଓ ତାହାର ରକ୍ଷକ ମଧ ।

ଓଡିଶା ରାଜ୍ୟ ସଂଗ୍ରହାଳୟରେ ସମ୍ପୂର୍ଣ୍ଣ ଏକ ଭିନ୍ନ ଶୈଳୀର ମନସା ମୂର୍ତ୍ତି ରହିଛି । ଏଠାରେ ସାବଲୀଳ ଭଙ୍ଗୀରେ ଦଣ୍ଡାୟମାନା ଦ୍ୱିଭୁଜା ଦେବୀଙ୍କ ଦକ୍ଷିଣ ହସ୍ତରେ ଭୂମିସ୍ପର୍ଶ କରୁଥିବା ଏକ କୁଠାର ଏବଂ ବାମ ହସ୍ତରେ କଟି ଉପରେ ଧାରଣ କରିଥିବା ଏକ ଶିଶୁ ଦେଖାଯାଏ । ଦେବୀ ମସ୍ତକରେ କିରୀଟମୁକୁଟ, ଦେହରେ ସୁନ୍ଦର ବସ୍ତ୍ରାଳଙ୍କାର ପରିଧାନ କରିଥିବାବେଳେ ଅମୃତ କଳସଟି ତାଙ୍କ କଟିସୂତ୍ର ସହିତ ବନ୍ଧା ହୋଇଛି । ଏହା ବ୍ୟତୀତ ଦେବୀଙ୍କ ପ୍ରଷ୍ଠଦରେ ଥିବା ନାଗର ପ୍ରସାରିତ ସପ୍ତଫଣା ଦେବୀଙ୍କ ମସ୍ତକ ଉପରେ ରହିଛି । ମୂର୍ତ୍ତିର ଦୁଇପାର୍ଶ୍ୱରୁ ଦକ୍ଷିଣ ପାର୍ଶ୍ୱରେ ଜଣେ ଗଣ କଳସ ଧାରଣ କରି ଓ ବାମ ପାର୍ଶ୍ୱରେ ଜଣେ ପରିଚାରିକା ନମସ୍କାର ମୁଦ୍ରାରେ ଉଭା ହୋଇଛନ୍ତି । କଳାମୁଗୁନି ପଥରରେ ନିର୍ମିତ କୃତିଟି ମଧ୍ୟଯୁଗୀୟ ବୋଲି ଅନୁମାନ କରାଯାଏ । ଭୁବନେଶ୍ୱରର ବୈତାଳ ଦେଉଳର ଦୁଇଟି ମୂର୍ତ୍ତି ମଧ୍ୟରୁ ଗୋଟିଏ ସାଧାରଣ ମନସା ମୂର୍ତ୍ତି,ଦେବୀ ଦୁଇ ହସ୍ତରେ ଅମୃତ କଳସଟି ଧାରଣ କରିଛନ୍ତି । ଦ୍ୱିତୀୟ ମୂର୍ତ୍ତିରେ ଦେବୀ ଯୋଗାସନରେ ବସିଥିବାବେଳେ ବାମ ହସ୍ତରେ ଅମୃତକଳସଟି ଧାରଣ କରି ଦକ୍ଷିଣ ହସ୍ତରେ ବରଦ ମୁଦ୍ରା ପ୍ରଦର୍ଶନ କରିଛନ୍ତି । ଦେବୀଙ୍କ ମସ୍ତକ ଉପରେ ନାଗର ପ୍ରସାରିତ ସପ୍ତଫଣା ଓ ବିଶ୍ୱପଦ୍ମାସନ ତଳେ ଗୋଟିଏ ପୁଷ୍ପଯୁକ୍ତ ପୂର୍ଣ୍ଣକୁମ୍ଭ ଓ ବଇଠି ଉପରେ ଗୋଟିଏ ବଡ ଫରୁଆ ରହିଛି । ଏହା ବ୍ୟତୀତ ମୂର୍ତ୍ତିର ଉପର ଭାଗ ଦୁଇ ପାର୍ଶ୍ୱରେ ଗନ୍ଧର୍ବ-ଅପ୍ସରା ଏବଂ ଦୁଇ ପରିଚାରକ ଉଭା ହୋଇଛନ୍ତି । ନାଲି କନ୍ଦାପଥରର ଏହି ଉଚ୍ଚକୋଟିର କଳାଶୈଳୀଯୁକ୍ତ ମୂର୍ତ୍ତିଟି ଦେଉଳ ଭିତରେ ରହିଛି । ଏହା ଖ୍ରୀ. ୯ମ ଶତାବ୍ଦୀର ଅଟେ ।

ସୂଚନାଯୋଗ୍ୟ ଯେ, ଦକ୍ଷିଣ ଓ ଉତ୍ତର ଭାରତରେ ବିଭିନ୍ନ ପ୍ରକାର ମନସା ଓ ନାଗମାତା ମୂର୍ତ୍ତି ରହିଛି । ଏହା ବ୍ୟତୀତ ବୌଦ୍ଧ ଧର୍ମରେ ମଧ ଏହି ମୂର୍ତ୍ତି ଅନୁରୂପ ଦେବୀ ମୂର୍ତ୍ତିମାନ ଦେଖାଯାଏ । ତେବେ, ଏମାନଙ୍କ ନାମରେ ଭିନ୍ନତା ଥାଏ । ବଙ୍ଗଳାରେ ଉଭୟ ହିନ୍ଦୁ ଓ ବୌଦ୍ଧ ମତବାଦର ନାଗମାତା ମୂର୍ତ୍ତିମାନ ବ୍ରୋଞ୍ଜରେ ଦେଖିବାକୁ ମିଳେ ।

## ଜରତ୍କାରୁ

ମହାଭାରତର ତଥ୍ୟ ଅନୁଯାୟୀ ଜରତ୍କାରୁ ସର୍ପରାଜ ବାସୁକିଙ୍କ ଭଗିନୀ ଅଟନ୍ତି । ଦେବୀ ପ୍ରତିଜ୍ଞା କଲେ ଯେ, ସେ ତାଙ୍କରି ନାମର କୌଣସି ପୁରୁଷଙ୍କୁ ବିବାହ କରିବେ । ଘଟଣାଚକ୍ରରେ ମହର୍ଷି ଜରତ୍କାରୁଙ୍କ ସହିତ ତାଙ୍କର ବିବାହ ହେଲା । ପତି-ପତ୍ନୀ କିଛିଦିନ ସୁଖରେ ରହିବା ପରେ ମହର୍ଷି ଜରତ୍କାରୁ ତପସ୍ୟା ନିମନ୍ତେ ବନକୁ ଯିବାକୁ ଇଛା କଲେ । ଏହି ସମୟରେ ଦେବୀ ଜରତ୍କାରୁ କହିଲେ "ପ୍ରଭୁ, ଆପଣ ମୋତେ ଏକାକୀ ଛାଡି ଚାଲିଯିବେ" । ଏହାର ଉତ୍ତରରେ ଋଷିଙ୍କ ମୁଖରୁ ବାହାରିଲା 'ଅସ୍ତି' ବା 'ରହିଛି' । ଅର୍ଥାତ ଋଷି ସଙ୍କେତରେ କହିଲେ ' ତୁମ ଗର୍ଭରେ ମୋର ସନ୍ତାନ ରହିଛି' । କିଛି କାଳ ପରେ ତାଙ୍କର ପୁତ୍ର ସନ୍ତାନଟିଏ ଜନ୍ମହେଲା । ଜରତ୍କାରୁ ତା'ର ନାମ ରଖିଲେ 'ଆସ୍ତିକ' । ନାଗମାତା ଓ ଋଷିପୁତ୍ର ଆସ୍ତିକ ବହୁ ବିଦ୍ୟା ଶିକ୍ଷା ସହିତ ତପସ୍ୟା କରି ଜଣେ ଋଷି ଭାବରେ ଖ୍ୟାତି ଅର୍ଜନ କଲେ ।

ଅନ୍ୟ ଏକ ଘଟଣାରୁ, ପିତୃହନ୍ତା ସର୍ପପ୍ରତି ପ୍ରତିଶୋଧ ପରାୟଣ ହୋଇ ରାଜା ଜନ୍ମେଜୟ ସର୍ପଯଜ୍ଞର ଆୟୋଜନ କଲେ । ଯଜ୍ଞରେ ଆହୁତି ଦେବାମାତ୍ରେ ସର୍ପମାନେ ଯଜ୍ଞାଗ୍ନିରେ ପଡି ପ୍ରାଣତ୍ୟାଗ କଲେ । ଏଥିରେ ସର୍ପକୁଳରେ ଭାଳେଣି ପଡିଲା । ଏହି ସମସ୍ୟାର ସମାଧାନ ନିମନ୍ତେ ସର୍ପମାନେ ଚିନ୍ତା କଲେ, ତାଙ୍କ ଭଗିନୀ ପୁତ୍ର ଆସ୍ତିକଙ୍କୁ ଜନ୍ମେଜୟଙ୍କ ନିକଟକୁ ପଠାଇବା ନିମନ୍ତେ । ଆସ୍ତିକ ଜନ୍ମେଜୟଙ୍କ ଯଜ୍ଞଶାଳାକୁ ଯାଇ ବେଦପାଠ କରିବା ସହିତ ତାଙ୍କୁ ଆଶୀର୍ବାଦ କଲେ ଏବଂ ବୁଝାଇଲେ ଯେ 'ସର୍ପମାନେ ଜଗତର ମଙ୍ଗଳ କରିଥାଆନ୍ତି, ଏଣୁ ସର୍ପକୁଳ ଲୋପ ପାଇଲେ ସଂସାରର ବହୁ ଅନିଷ୍ଟ ହେବ' । ଜନ୍ମେଜୟ ବିଷୟଟି ହୃଦୟଙ୍ଗମ କରି 'ସର୍ପଯଜ୍ଞ' ସମାପନ କଲେ । ଏଥିରେ ସର୍ପମାନେ ଆସ୍ତିକଙ୍କ ଉପରେ ସନ୍ତୁଷ୍ଟ ହୋଇ ବର ପ୍ରଦାନ କଲେ ଯେ ' ଯେଉଁ ବ୍ୟକ୍ତି 'ଆସ୍ତିକ' ନାମ ଉଚ୍ଚାରଣ କରିବ ତାଙ୍କୁ ସର୍ପ ଦଂଶନ କରିବନାହିଁ ।' ଏହି ପୌରାଣିକ ଆଖ୍ୟାନ ଉପରେ ବିଶ୍ୱାସ ରଖି ଲୋକେ ଅନ୍ଧକାର ରାତ୍ରିରେ ଗମନବେଳେ 'ଆସ୍ତିକ' ନାମ ଉଚ୍ଚାରଣ କରିଥାଆନ୍ତି ।

## ମୂର୍ତ୍ତିକଳାରେ ଆସ୍ତିକ-ଜରତ୍କାରୁ

ଓଡିଶାରେ ଖ୍ରୀ. ୧୦-୧୧ଶ ଶତାବ୍ଦୀ ମଧ୍ୟରେ ସର୍ପଭୟ ଦୂର ନିମନ୍ତେ 'ଆସ୍ତିକ ଜରତ୍କାରୁ'ଙ୍କ ପୂଜା ଲୋକପ୍ରିୟ ହୋଇଥିଲା । ଏଥିନିମନ୍ତେ ଏହି ନାଗମାତା ଓ ତାଙ୍କ ପୁତ୍ରଙ୍କର ଅନେକ ଯୁଗଳ ପ୍ରତିମା ପଥରରେ ନିର୍ମିତ ହୋଇଥିଲା । ମୂର୍ତ୍ତିକଳାରେ ଦେବୀ ଜରତ୍କାରୁ ପଦ୍ମ ଉପରେ କିମ୍ବା ଚଉକି ଉଚ୍ଚତାର ଏକ ଆସନ



ଆସ୍ତିକଜରତ୍କାରୁ,
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ



ଆସ୍ତିକଜରତ୍କାରୁ,ପିତାପଡ଼ା
ପ୍ରାଚୀନଦୀ ଅବବାହିକା

ଉପରେ ଲଳିତାସନରେ ବସିଥିବାବେଳେ ପୁତ୍ର ଆସ୍ତିକ ତାଙ୍କ କୋଳରେ ବସିଥାଆନ୍ତି କିମ୍ବା ଶୟନ କରିଥାଆନ୍ତି । ଆସ୍ତିକ ଜରତ୍କାରୁଙ୍କ ଦେହରେ ସାଧାରଣ ବସ୍ତ୍ରାଳଙ୍କାର ଶୋଭା ପାଉଥିବାବେଳେ ତାଙ୍କ ଆସନର ନିମ୍ନରେ ଏକ ସର୍ପକୁ ଜଣେ କିମ୍ବା ଦୁଇ ଜଣ ଭକ୍ତ ନମସ୍କାର କରୁଥିବା ପିତୁଳା ଓ ମୂର୍ତ୍ତି ପ୍ରଚ୍ଛଦରେ ଏକ ସମିବୃକ୍ଷ ଦେଖିବାକୁ ମିଳେ । ଏହି ମୂର୍ତ୍ତିଗୁଡିକ ସାଧାରଣତଃ କନ୍ଦାପଥରରେ ନିର୍ମିତ ହୋଇଥିବାବେଳେ ଈଷତ୍ ନୀଳ-କଳା ମୁଗୁନି ପଥରରେ ନିର୍ମିତ ଏକ ସୁନ୍ଦର ଆସ୍ତିକ-ଜରତ୍କାରୁ ମୂର୍ତ୍ତି ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱରରେ ରହିଛି । କୃତିଟିର କଳାଶୈଳୀ ବିକଶିତ, କିନ୍ତୁ ପରିତାପର ବିଷୟ ଏହିକି, ଏହାର ମସ୍ତକଭାଗ ଭଗ୍ନ । ସୂଚନାଯୋଗ୍ୟ ଯେ, ଆସ୍ତିକ-ଜରତ୍କାରୁଙ୍କ ମୂର୍ତ୍ତିଗୁଡିକ ସାଧାରଣତଃ କେତେକ ମଧ୍ୟଯୁଗୀୟ ଶିବମନ୍ଦିର ପରିସରରେ, ମୁକ୍ତାକାଶ ତଳେ ହିଁ ରହିଥାଏ । ସେ ସମୟର ନାଗପୂଜା ପରମ୍ପରା ଗୁରୁତ୍ୱ ହରାଇବା ପରେ ଗ୍ରାମବାସୀ ଏଗୁଡିକ ସତ୍ୟବାନ-ସାବିତ୍ରୀଙ୍କ ପ୍ରତିମା ବୋଲି ମନେକରନ୍ତି । ଖୋର୍ଦ୍ଧା, ପୁରୀ ଓ କଟକ ଜିଲ୍ଲାର ପ୍ରାଚୀ ନଦୀ ଅବବାହିକାରେ ଏହି ପ୍ରକାରର ମୂର୍ତ୍ତି ଅଧିକ ସଂଖ୍ୟାରେ ଦେଖିବାକୁ ମିଳେ ।



# ସର୍ପଦେବତାଙ୍କ ମୂର୍ତ୍ତିତତ୍ତ୍ୱ

କେତେକ ଶିଳ୍ପଶାସ୍ତ୍ର ତଥା ପୁରାଣରେ ନାଗ ବା ସର୍ପଦେବତାମାନଙ୍କ ମୂର୍ତ୍ତିତତ୍ତ୍ୱ ଉଲ୍ଲେଖ ଅଛି । ଏହା ମଧ୍ୟରୁ ହେମାଦ୍ରିଙ୍କ 'ଚତୁଃବର୍ଗଚିନ୍ତାମଣି' ଅନୁଯାୟୀ ମନୁଷ୍ୟାକୃତି ନାଗଦେବ ଦ୍ୱିଭୁଜ ଏବଂ ତାଙ୍କ ହସ୍ତରେ ଅକ୍ଷମାଳା ଓ କଟାଜିଭ ରହିବ । ଏହା ସହିତ ତାଙ୍କ ମସ୍ତକ ଉପରେ ନାଗର ପ୍ରସାରିତ ସପ୍ତଫଣା ରହିବ । 'ବିଷ୍ଣୁଧର୍ମୋତ୍ତର ପୁରାଣ'ର (୬୫ ଅଧ୍ୟାୟ)ର ବର୍ଣ୍ଣନା ଅନୁଯାୟୀ ଅନନ୍ତନାଗ ଚର୍ତୁଭୁଜ । ତାଙ୍କ ଦକ୍ଷିଣ ଦୁଇହସ୍ତରେ ପଦ୍ମ ଓ ଗଦା ଏବଂ ବାମ ହସ୍ତ ଦ୍ୱୟରେ ହଳ ଓ ଶଙ୍ଖ ରହିବା ବିଧେୟ । ଏହି ବର୍ଣ୍ଣନା ବଳରାମଙ୍କ ସହିତ ବହୁଭାବରେ ସମତା ରକ୍ଷାକରେ । ଏହା ବ୍ୟତୀତ ତାଙ୍କ ମସ୍ତକ ଉପରେ ସର୍ପର ପ୍ରସାରିତ ବହୁଫଣା ମଧ୍ୟରୁ ମଧ୍ୟଭାଗ ଫଣା ଉପରେ ପୃଥିବୀମାତା ଉଭାହୋଇଥିବେ ଏବଂ ଫଣାଗୁଡିକ ରତ୍ନଖଚିତ ହୋଇଥିବ । 'ମୟମତ' ଶିଳ୍ପଶାସ୍ତ୍ର ଅନୁସାରେ ଅନନ୍ତନାଗଙ୍କ ମସ୍ତକ ଉପରେ ପଞ୍ଚ କିମ୍ବା ସପ୍ତ ଫଣା ରହିବ । ସେ ତ୍ରିନେତ୍ର ଓ ଚର୍ତୁଭୁଜ । ଏହା ମଧ୍ୟରୁ ସେ ମୁଖ୍ୟ ଦୁଇ ହସ୍ତରେ ଅଭୟ ଓ ବରଦ ମୁଦ୍ରା ପ୍ରଦର୍ଶନ କରି ଅନ୍ୟ ହସ୍ତ ଦ୍ୱୟରେ ନାଗ ଧାରଣ କରିବେ । ଏହି ଭାବରେ ସେ ପଦ୍ମାସନ ଉପରେ ଉଭା ହୋଇଥିବେ । 'ମୟଶିଳ୍ପ'ର ବର୍ଣ୍ଣନା ଅନୁଯାୟୀ ସେ ଦ୍ୱିଭୁଜ ଏବଂ ହସ୍ତରେ ଅକ୍ଷମାଳା ଓ କମଣ୍ଡଳୁ ଧାରଣ କରିବେ । ଶିଳ୍ପରତ୍ନ (୫-୧୩୦) ଅନୁସାରେ ନାଗଦେବତାଙ୍କ ଉପରଭାଗ ମନୁଷ୍ୟ ଓ ତଳଭାଗ ସର୍ପଶରୀର ସହିତ ତାଙ୍କ ମସ୍ତକ ଉପରେ ନଅ, ସାତ, ପଞ୍ଚ, କିମ୍ବା ତିନି ସର୍ପଫଣା ରହିବା ସହିତ ସେ ଦ୍ୱିଭୁଜରେ ଖଣ୍ଡା ଓ ଢାଲ ଧାରଣ କରିବେ । ତେବେ, ମୂର୍ତ୍ତିକଳାରେ ବହୁକ୍ଷେତ୍ରରେ ଏହି ତତ୍ତ୍ୱ ଦେଖିବାକୁ ମିଳେନାହିଁ ।



ନାଗମାତା, ମନସା
ବାରାହୀ ମନ୍ଦିର, ଚଉରାଶି



# ଇତିହାସରେ କେତେକ ପ୍ରଖ୍ୟାତ ନାଗ ରାଜବଂଶ

ଇତିହାସ ଅନୁଧାନ କଲେ ଜଣାଯାଏ ଯେ, ବହୁ ପ୍ରାଚୀନ କାଳରୁ ନାଗବଂଶୀ ରାଜାମାନେ ଭାରତର ବିଭିନ୍ନ ପ୍ରାନ୍ତରେ ଶାସନ କରିଆସିଛନ୍ତି । ଗୌତମ ବୁଦ୍ଧଙ୍କ ଜନ୍ମ ଓ ଧର୍ମ ପ୍ରଚାର ସମୟରେ ମଧ ନାଗମାନଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଥିଲା । ଭାରତର ଏକ ପ୍ରାଚୀନ ରାଜବଂଶ ଥିଲେ 'ଶିଶୁନାଗ ବଂଶ' । ରାଜା ଶିଶୁନାଗଙ୍କ ନାମରେ ଏହି ବଂଶର ନାମକରଣ ହୋଇଥିବାବେଳେ ଏହି ବଂଶର ଏଗାର ଜଣ ରାଜା ମଗଧ ଅଞ୍ଚଳରେ ପ୍ରାୟ ୭୦ ବର୍ଷ ଶାସନ କରିଥିବା ଜଣାଯାଏ । ଏମାନଙ୍କ ଶାସନର ପ୍ରାରମ୍ଭ କାଳ ଥିଲା ଆନୁମାନିକ ଖ୍ରୀ.ପୂ. ୪୧୩ ଶତାବ୍ଦୀ । ବୌଦ୍ଧଗ୍ରନ୍ଥ 'ମହାବୋଧିବଂଶ'ର ତଥ୍ୟ ଅନୁଯାୟୀ ଏହି ରାଜାମାନେ ଥିଲେ, କାଳାଶୋକ, ଭଦ୍ରସେନ, କୋରଣ୍ଡବର୍ଣ୍ଣ, ମଙ୍ଗୁର, ସର୍ବଞ୍ଜାହ, ଜାଳିକ, ଉଭାକ, ସଞ୍ଜୟ, କୋରବ୍ୟ, ନନ୍ଦିବର୍ଦ୍ଧନ ଓ ପଞ୍ଚାମକ ।

ଅନେକ ସମୟରେ ପୌରାଣିକ କିମ୍ବଦନ୍ତୀକୁ ଇତିହାସର ପରିପୂରକ ଭାବେ ଗ୍ରହଣ କରାଯାଏ । ଏହି ପ୍ରକାର ଏକ କିମ୍ବଦନ୍ତୀ ଅନୁଯାୟୀ ଉତ୍ତର ଭାରତର ଚାରିଗୋଟି ଅଞ୍ଚଳ ନାଗବଂଶୀ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା ଏବଂ ଏଠାରେ ରାଜଦେବତା ନାଗମାନଙ୍କ ବଳିଷ୍ଠ ପୂଜାର ପରମ୍ପରା ରହିଥିଲା । ଏହି ସ୍ଥାନଗୁଡିକ

ଚିତ୍ର : ମଥୁରାରୁ ପ୍ରାପ୍ତ ନାଗରାଜ ମୂର୍ତ୍ତି, ଆନୁମାନିକ ଖ୍ରୀ. ୨ୟ ଶତାବ୍ଦୀ, ମଥୁରା ସଂଗ୍ରହାଳୟ ।

ହେଉଛି ମଧ୍ୟପ୍ରଦେଶ ଅର୍ନ୍ତଗତ ବିଦିଶା, ଗ୍ୱାଲିଅର ନିକଟବର୍ତ୍ତୀ ପାୱାୟା ବା ପୂର୍ବର ପଦ୍ମାବତୀ, ଉତ୍ତର ପ୍ରଦେଶର ମିର୍ଜାପୁର ଜିଲ୍ଲାର କାନ୍ତିପୁର ଓ ମଥୁରା । ଏହା ମଧ୍ୟରେ ବିଦିଶାରେ ଆନୁମାନିକ ଖ୍ରୀ.ପୂ. ୧ମ ଶତାବ୍ଦୀରେ ଦୁଇଟି ରାଜବଂଶ ଶାସନ କରିଥିଲେ । ଏହି ଶାସକମାନେ ଥିଲେ : ଶେଷନାଗ, ଭୋଗୀ, ରାମଚନ୍ଦ୍ର, ଧର୍ମବର୍ଦ୍ଧନ, ନଖଉନ, ଧନବର୍ମନ ଓ ବଙ୍ଗର । ଏହାପରେ ଅନ୍ୟ ନାଗ ଶାସକମାନେ ଥିଲେ ଭୂତନନ୍ଦୀ,ଶିଶୁନନ୍ଦୀ, ଯଶୋନନ୍ଦୀ, ପୁରଷଦତ୍ତ, ଉତ୍ତମଦତ୍ତ, କାମଦତ୍ତ, ଭବଦତ୍ତ ଓ ଶିବଦତ୍ତ । ଐତିହାସିକ କେ.ପି. ଜୟସ୍ୱାଲ୍‌ଙ୍କ ମତ ଅନୁସାରେ ବିଦିଶାରେ ପ୍ରାୟ ୧୫ ଜଣ ନାଗବଂଶୀ ରାଜା ଦୀର୍ଘ ୨୦୦ ବର୍ଷ ଧରି ରାଜତ୍ୱ କରୁଥିଲେ ।

ଖ୍ରୀଷ୍ଟୀୟ ୩ୟ ଶତାବ୍ଦୀରେ ଉତ୍ତର ଭାରତରେ ନବନାଗ ନାମକ ଜଣେ ରାଜା 'ନବନାଗ ବଂଶ'ର ପ୍ରତିଷ୍ଠାତା ଥିଲେ । ଅନ୍ୟଭାବରେ ଏହି ବଂଶ ଭାରଶିବ ବଂଶ ନାମରେ ମଧ୍ୟ ପରିଚିତ । ଏହି ବଂଶର ଜଣେ ନାଗରାଜା ମଥୁରାରେ ହିନ୍ଦୁ ସାମ୍ରାଜ୍ୟର ପୁନରୁତ୍ଥାନ କରିଥିଲେ । ଏହାଦ୍ୱାରା ମଥୁରା ନାଗ ସଂସ୍କୃତିର ଏକ ପ୍ରମୁଖ କ୍ଷେତ୍ର ହୋଇଥିଲା । ପ୍ରତ୍ନତାତ୍ତ୍ୱିକ ଖନନ ଦ୍ୱାରା ମଥୁରା ଅଞ୍ଚଳରୁ ବହୁ ନାଗଦେବତା ମୂର୍ତ୍ତି ମିଳିଛି । ଏହି ବଂଶର କେତେକ ପ୍ରଖ୍ୟାତ ନାଗବଂଶୀ ରାଜା ହେଉଛନ୍ତି ନବନାଗ, ବୀରନାଗ, ହୟନାଗ, ତ୍ରୟନାଗ, ବର୍ହିଣନାଗ, ଚରଜନାଗ ଓ ଭବନାଗ ।

ଗୁପ୍ତ ସମ୍ରାଟ ଚନ୍ଦ୍ରଗୁପ୍ତ -୨ୟ କୁବେରନାଗ ନାମ୍ନୀ ଜଣେ ନାଗବଂଶୀ ରାଜକନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କର ପ୍ରଭାବତୀ ନାମକ ଜଣେ ରାଜକୁମାରୀ ଥିଲେ । ଗୁପ୍ତ ସମ୍ରାଟ ସମୁଦ୍ରଗୁପ୍ତଙ୍କ ଆହ୍ଲାବାଦ ସ୍ତମ୍ଭ ଅଭିଲେଖରୁ ଜଣାଯାଏ ଯେ, ସେ ଉତ୍ତର ଭାରତର ନାଗବଂଶୀ ରାଜା ନାଗଦତ୍ତ, ଗଣପତି ନାଗ, ନାଗସେନ ଓ ନନ୍ଦି ଆଦିଙ୍କୁ ପରାସ୍ତ କରିଥିଲେ । ଏହା ବ୍ୟତୀତ ସ୍କନ୍ଦଗୁପ୍ତ ତାଙ୍କ ରାଜତ୍ୱ କାଳରେ ସର୍ବନାଗ ନାମକ ଜଣେ ସାମନ୍ତଙ୍କୁ ଗଙ୍ଗା, ଯମୁନା , ପ୍ରୟାଗ ଓ ହରଦ୍ୱାର ଅଞ୍ଚଳର ଶାସନ ମୁଖ୍ୟଭାବେ ଅବସ୍ଥାପିତ କରିଥିବା ଜଣାଯାଏ । ଏହି ସମୟରେ ବାକାଟକ ରାଜା ପ୍ରବରସେନଙ୍କ ପୁତ୍ର ଭାରଶିବ- ନାଗବଂଶର ରାଜକୁମାରୀଙ୍କ ସହ ବିବାହ କରିଥିଲେ ।

ମଧ୍ୟଭାରତର ବସ୍ତର ଓ ଓଡିଶାର କୋରାପୁଟ ଅଞ୍ଚଳ ପୂର୍ବେ ଚକ୍ରକୋଟ ମଣ୍ଡଳର ଅର୍ନ୍ତଭୁକ୍ତ ଥିଲା । ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀରେ ଏଠାରେ ଛିନ୍ଦକନାଗ ରାଜବଂଶ ରାଜତ୍ୱ କରୁଥିଲେ । ପୂର୍ବର ବାଣାସୁର ବା ବର୍ତ୍ତମାନର ବାରାସୁର ସେମାନଙ୍କ ରାଜଧାନୀ ଥିଲା । ଏମାନେ କାଶ୍ୟପ ଗୋତ୍ରୀ ଥିଲେ । ଏହା ବ୍ୟତୀତ ଛତିଶଗଡ ଅଞ୍ଚଳରେ ଅନ୍ୟ କେତେକ ଛୋଟ ଛୋଟ ନାଗବଂଶୀ କ୍ଷତ୍ରୀୟ ମଧ୍ୟ ରାଜତ୍ୱ କରିଥିବା ଜଣାଯାଏ । ସେମାନଙ୍କ ମଧ୍ୟରେ ଫଣିନାଗ ବଂଶ ଅନ୍ୟତମ ।

ଏମାନେ ଏକ ଛୋଟ ରାଜବଂଶ ହେଲେ ହେଁ ଏହାର ୨୪ ଜଣ ରାଜା ଖ୍ରୀ.୧୧ଶ-୧୪ଶ ଶତାବ୍ଦୀ ପର୍ଯ୍ୟନ୍ତ, ପ୍ରାୟ ୪୦୦ ବର୍ଷ କ୍ଷମତାରେ ଥିବା ଏକ ଶିଳାଲେଖରୁ ସୂଚନା ମିଳେ। ଏହି ଉଭୟ ରାଜବଂଶ ଶିବ ଓ ନାଗ ପୂଜକ ଥିବାବେଳେ ବହୁ ସୁନ୍ଦର ଶିବ ମନ୍ଦିର ଓ ନାଗ, ନାଗୀ ମୂର୍ତ୍ତି ନିର୍ମାଣ କରାଇଥିଲେ।

ଭାରତର ଉତ୍ତରାଞ୍ଚଳ ପାହାଡିଆ ରାଜ୍ୟ ମଣିପୁର, ତ୍ରିପୁରା, କାଶ୍ମୀରରେ ପୂର୍ବେ ନାଗବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ। ସେଠାରେ ଖ୍ରୀ: ୭ମ-୮ମ ଶତାବ୍ଦୀରେ ମୁକ୍ତପିଦ ଲଳିତାଦିତ୍ୟ ନାଗବଂଶ ରାଜା ଓ ତାଙ୍କ ଉତ୍ତରାଧିକାରୀମାନେ ଶାସନ କରିଥିବା ଜଣାଯାଏ। କବି କହ୍ଲଣ ତାଙ୍କ 'ରାଜତରଙ୍ଗିଣୀ' ଗ୍ରନ୍ଥରେ ଏହି ବଂଶର ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି। ରାଜା ଲଳିତାଦିତ୍ୟ ନାଗପୂଜକ ସହିତ ସୂର୍ଯ୍ୟ ଉପାସକ ମଧ ଥିଲେ। ସେ କାଶ୍ମୀରରେ ମାର୍ତ୍ତଣ୍ଡ -ସୂର୍ଯ୍ୟ ମନ୍ଦିର ନିର୍ମାଣ କରାଇଥିଲେ। ନାଗରାଜ୍ୟ ମଣିପୁରରେ ନାଗ ଶାସକମାନେ ରାଜତ୍ୱ କରୁଥିଲେ। ସେମାନଙ୍କ ବଂଶଧରମାନେ ଅଦ୍ୟାବଧି ସେଠାରେ 'ଆଓ-ନାଗ', 'ସେମ-ନାଗ' 'ତେଙ୍ଗିମ୍-ନାଗ' ନାମରେ ପରିଚିତ।

ଦକ୍ଷିଣ ଭାରତରେ ପ୍ରଖ୍ୟାତ ରାଜବଂଶଗୁଡିକ ହେଉଛି ପଲ୍ଲବ, ଚାଲୁକ୍ୟ, ଚୋଳ, ପାଣ୍ଡ୍ୟ, ବିଜୟନଗର, ନାୟକ, ଓ ହୋୟଶାଳ।ଏହି ବଂଶଗୁଡିକର ନାମ ସହିତ 'ନାଗ' ଶବ୍ଦର ସମ୍ପର୍କ ନଥିବାବେଳେ ଏଥିରୁ ଅନେକ ବଂଶ ନାଗଗୋଷ୍ଠୀ କ୍ଷତ୍ରିୟମାନଙ୍କ ସହିତ ବୈବାହିକ ଓ ରାଜନୈତିକ ସମ୍ପର୍କ ରଖୁଥିଲେ। ଏମାନଙ୍କ ମଧ୍ୟରେ ଥିଲେ ଅନେକ ମଧ୍ୟମ ଓ କ୍ଷୁଦ୍ର ରାଜବଂଶ। ସେଥିମଧ୍ୟରୁ ଅଳ୍ପ କେତୋଟିର ଉଦାହରଣ ନିମ୍ନରେ ଦିଆଗଲା।



କର୍ଣ୍ଣାଟକ, ଗୁଲଗାଓଁର ପ୍ରାଚୀନ ନାଗନାଗୀ ପ୍ରତିମା ଓ ଅନ୍ୟ କେତେକ ମୂର୍ତ୍ତି, ଆନୁମାନିକ ୧ମ ଶତାବ୍ଦୀ।

ପଲ୍ଲବ ରାଜବଂଶ 'ନାଗକୁଳ'ର ଏକ ମୁଖ୍ୟ ଶାଖା ବୋଲି ଜଣାଯାଏ । ଏକ କିମ୍ବଦନ୍ତୀ ଅନୁଯାୟୀ ଜଣେ ଆଚାର୍ଯ୍ୟ ବ୍ରାହ୍ମଣଙ୍କ ଔରସ ଓ ନାଗ କନ୍ୟାଙ୍କ ଗର୍ଭରୁ ଜଣେ ପରାକ୍ରମଶାଳୀ କ୍ଷତ୍ରିୟ ଜନ୍ମ ଗ୍ରହଣ କରିଥିଲେ । ତାଙ୍କଠାରୁ ହିଁ 'ପଲ୍ଲବ ରାଜବଂଶ'ର ସୃଷ୍ଟି । ଦକ୍ଷିଣଭାରତର 'ରାୟକୋଟା' ତାମ୍ର ଶାସନରୁ ଜଣାଯାଏ ଯେ, ମହାରଥି ଦ୍ରୋଣାଚାର୍ଯ୍ୟଙ୍କ ପୁତ୍ର ଅଶ୍ୱତ୍ଥାମା ଜଣେ ନାଗବଂଶୀ ରାଜକନ୍ୟାଙ୍କୁ ବିବାହ କରିଥିଲେ । ତାଙ୍କର ସ୍କନ୍ଦଶିଷ୍ୟ ନାମକ ପୁତ୍ର ହେଉଛନ୍ତି ପଲ୍ଲବ ରାଜବଂଶର ପ୍ରତିଷ୍ଠାତା । କାଞ୍ଚି ଦକ୍ଷିଣ ଭାରତର ଏକ ପ୍ରଖ୍ୟାତ ରାଜ୍ୟ । ଏହି ରାଜ୍ୟର ପ୍ରାଚୀନ ରାଜାମାନେ ନାଗବଂଶୀୟ ଥିଲେ । ପ୍ରାଚୀନ ସାତବାହନ ରାଜାମାନଙ୍କର 'ଗୁପ୍ତ' ଓ 'ନାଗ' ସଂଜ୍ଞାଧାରୀ ଶାସକମାନେ ନାଗଗୋତ୍ରୀ ଥିବା ଜଣାଯାଏ । ସ୍କନ୍ଦନାଗ ନାମକ ଏହି ବଂଶର ଜଣେ ରାଜା ବେଲ୍ଲାରୀ ଜିଲ୍ଲାରେ ଶାସନ କରୁଥିଲେ । ମହିଶୂରର ଇତିହାସରୁ ଜଣାଯାଏ ଯେ ସେଠାରେ ଆଧିପତ୍ୟ ବିସ୍ତାର କରିଥିବା 'ନାଗଭର' ସୈନ୍ୟମାନଙ୍କୁ ପଶ୍ଚିମ-ଗଙ୍ଗବଂଶୀୟ ରାଜା ନୁତୁଗଙ୍କ ପୁତ୍ର ଏରେୟାପ୍ପା ପରାସ୍ତ କରି ସେଠାରେ ବିଶାଳ ଗଙ୍ଗବାଡି ରାଜ୍ୟ ସ୍ଥାପନ କରିଥିଲେ । ଏହା ବ୍ୟତୀତ ପୂର୍ବ-ଚାଲୁକ୍ୟ ରାଜା ବିଜୟାଦିତ୍ୟ ଖ୍ରୀ. ୯ମ ଶତାବ୍ଦୀରେ ନାଗବଂଶୀ ରାଜାମାନଙ୍କୁ ପରାସ୍ତ କରିଥିଲେ ।

ସୂଚନାଯୋଗ୍ୟ ଯେ, ତାମିଲନାଡୁର ଅନେକ ପୁରାଣ ଓ ଇତିହାସରେ 'ନାଗନାଡୁ' ବା ନାଗ ରାଜ୍ୟର ନାମ ବହୁଭାବରେ ଦେଖିବାକୁ ମିଳେ । ଏଥିରୁ ଜଣାଯାଏ ଯେ ପୂର୍ବେ 'ନାଗରାଜ୍ୟ' ନାମରେ ସେଠାରେ ଅନେକ ଅଞ୍ଚଳ ଥିଲା । କର୍ଣ୍ଣାଟକର ଏକ ପ୍ରାଚୀନ ମନ୍ଦିର ନଗରୀର ନାମ ହେଉଛି 'ଅହିହୋଲ' । ଏହା କୌଣସି ନାଗବଂଶୀ ରାଜାଙ୍କ ରାଜଧାନୀ ଥିବା ଜଣାଯାଏ ।

 କୋଶଳର ତେଲୁଗୁ-ଚୋଳ ସାମନ୍ତ ରାଜା, ମହାମଣ୍ଡଳେଶ୍ୱର ଚନ୍ଦ୍ରାଦିତ୍ୟ ମହାରାଜଙ୍କର 'ବରାସୁର' ଶିଳାଲେଖରୁ ଜଣାଯାଏ ଯେ, ଛିନ୍ଦକନାଗ ନାମକ ଜଣେ ରାଜା ଧରବର୍ଷ ଓରଫ ଜଗଦେକଭୂଷଣଙ୍କ ରାଜତ୍ୱ ଖ୍ରୀ. ୧୦୬୦ ବେଳକୁ ସମାପ୍ତ ହୋଇଥିଲା । ଏହି ରାଜା ମଧ ନାଗବଂଶୀୟ ଥିଲେ । କାହ୍ନେରୀ ଗୁମ୍ଫା ଶିଳାଲେଖ ଅନୁସାରେ ଆନ୍ଧ୍ରର ସାତବାହନ ରାଜବଂଶରେ 'ନାଗନିକା' ନାମ୍ନୀ ଜଣେ ରାଣୀ ଥିଲେ । ସେ ନାଗବଂଶୀ ବିଷ୍ଣୁ କଡଚୁଟୁ କୁଳାନନ୍ଦ ସାତକର୍ଣ୍ଣୀଙ୍କ କନ୍ୟା ଓ ସ୍କନ୍ଦନାଗ ସାତକର୍ଣ୍ଣୀଙ୍କ ମାତା । ଆନ୍ଧ୍ରର କେତେକ ଜୈନ ଗ୍ରନ୍ଥରେ ସାତକର୍ଣ୍ଣୀ ଓ ନାଗବଂଶ ମଧରେ ବୈବାହିକ ଓ ରାଜନୈତିକ ସମ୍ପର୍କ ଥିବା ବିଷୟ ଉଲ୍ଲେଖ ଅଛି ।

ଓଡିଶାର ମୁଖ୍ୟ ରାଜବଂଶଗୁଡିକ ହେଉଛନ୍ତି ଶୈଳୋଦ୍‌ଭବ, ଭୌମକର, ସୋମ ବା କେଶରୀ ଏବଂ ଗଙ୍ଗ ବଂଶ । କେତେକ ଐତିହାସିକ ମତରେ ଭୌମକରମାନେ ଭୂୟାଁ ଜାତୀୟ ଜନଜାତିର ଏକ ଶାଖା । ସେମାନଙ୍କ ଉତ୍ପତ୍ତି ସମ୍ପର୍କରେ ଭୂୟାଁମାନେ କୁହନ୍ତି ଯେ 'ସେମାନେ ଭୂମିରୁ ଜାତ' । ଏହି ପରିପ୍ରେକ୍ଷୀରେ ନାଗମାନେ ମଧ ଭୂମିରେ ବାସ କରନ୍ତି । ଓଡିଶା, ବଙ୍ଗଳା, ଓ ଆସାମରେ ବାସ କରୁଥିବା ଭୂୟାଁମାନଙ୍କ ମଧରେ ଅନେକ ସର୍ପ ବା ନାଗ ଗୋତ୍ରୀ । ପୂର୍ବେ ନାଗଗୋଷ୍ଠୀ ପ୍ରାୟତଃ ବୌଦ୍ଧ ଥିଲେ । ଓଡିଶାର ଭୌମକର ରାଜବଂଶ ମଧ ବୌଦ୍ଧ ଥିବା ସହିତ ଶିବ ଓ ଶକ୍ତି ଉପାସକ ଥିଲେ । ଭୁବନେଶ୍ୱରରେ ସେମାନଙ୍କ ଦ୍ୱାରା ବିଭିନ୍ନ ମନ୍ଦିର ନିର୍ମିତ ହୋଇଛି । ଏମାନଙ୍କ ଦ୍ୱାରା ନିର୍ମିତ ବୈତାଳ ଦେଉଳର ପ୍ରବେଶ ଦ୍ୱାରର ଦୁଇ ପାର୍ଶ୍ୱରେ ନାଗନାଗୀ ଦ୍ୱାରପାଳ ମୂର୍ତ୍ତି ସ୍ଥାନିତ ହେବା ବ୍ୟତୀତ ଗର୍ଭଗୃହରେ ଚାମୁଣ୍ଡା ଓ ସପ୍ତମାତୃକାଙ୍କ ସହିତ ଏକ ସୁନ୍ଦର ନାଗମାତା ମୂର୍ତ୍ତି ଅଧିଷ୍ଠିତ ହୋଇଛନ୍ତି । ଏହା ବ୍ୟତୀତ ପ୍ରଖ୍ୟାତ ବୌଦ୍ଧସ୍ଥଳୀ ଲଳିତଗିରି , ରତ୍ନଗିରି ଓ ଉଦୟଗିରିରେ ଅନେକ ବୌଦ୍ଧ କୀର୍ତ୍ତି ମଧ ଏମାନଙ୍କ ପୃଷ୍ଠପୋଷକତା ଲାଭ କରିଥିଲା । ଏଠାରେ ଅନେକ ନାଗନାଗୀ ମୂର୍ତ୍ତି ଦେଖିବାକୁ ମିଳେ । ଭୌମକରମାନେ ନିଜର କୁଳଦେବତା ନାଗଙ୍କୁ ସମ୍ମାନ ଜଣାଇ ଏହି ମୂର୍ତ୍ତିଗୁଡିକ ନିର୍ମିତ କରାଇଥିବା ସୂଚନା ମିଳେ ।

ଉପରୋକ୍ତ ତଥ୍ୟ ବ୍ୟତୀତ ଓଡିଶାରେ ଅନେକ କ୍ଷୁଦ୍ର ଓ ସାମନ୍ତ ରାଜା ନାଗବଂଶୀୟ ଥିଲେ । ପ୍ରାଚୀ ନଦୀ ଅବବାହିକାର ନିଆଳି ଗ୍ରାମରେ ଥିବା ଶୋଭନେଶ୍ୱରର ଶିଳାଲେଖରୁ ଜଣାଯାଏ ଯେ, ନାଗବଂଶୀୟ ରାଜା ବୈଦ୍ୟନାଥ ଏହି ମନ୍ଦିରଟି ନିର୍ମାଣ କରିବା ସହିତ ମନ୍ଦିରର ସେବାନିମନ୍ତେ କେତେକ ଦେବଦାସୀଙ୍କୁ ନିଯୋଜିତ କରିଥିଲେ । ଐତିହାସିକ ସତ୍ୟନାରାୟଣ ରାଜଗୁରୁଙ୍କ ମତରେ ଓଡିଶାର ଭଞ୍ଜବଂଶର ଏକ ଶାଖା ମଧ ନାଗଗୋତ୍ରୀ ଥିଲେ । ବୌଦ ରାଜପରିବାର ନିଜକୁ କାଶ୍ୟପଗୋତ୍ରୀ ବୋଲାଉଥିଲେ । ଖ୍ରୀଷ୍ଟୀୟ ୧୧ ଶତାବ୍ଦୀରେ ବଲାଙ୍ଗୀର ଓ ସୋନପୁରରେ ଚନ୍ଦ୍ରାଦିତ୍ୟ ନାମକ ନାଗବଂଶୀ ରାଜା ରାଜତ୍ୱ କରିଥିବା ଜଣାଯାଏ । ଏହିପରି ଭାରତର ବହୁସ୍ଥାନରେ ନାଗବଂଶୀ କ୍ଷତ୍ରିୟମାନେ ବିଭିନ୍ନ ସମୟରେ ଶାସନ କରିଥିବା ପ୍ରମାଣ ମିଳେ ।

## ନାଗବଂଶୀ ଆଦିବାସୀ ଶାସକ

ଭାରତର କେତେକ ଅଞ୍ଚଳରେ ନାଗବଂଶୀ ଆଦିବାସୀ କ୍ଷତ୍ରୀୟ ବା ଶାସକ ସମ୍ପ୍ରଦାୟ ରହିଛନ୍ତି । ଏମାନଙ୍କ ବଂଶର ଉତ୍ପତ୍ତି ସମ୍ପର୍କରେ ବିଭିନ୍ନ ଲୋକକଥା ବା

କିମ୍ବଦନ୍ତୀ ଶୁଣିବାକୁ ମିଳେ । ଏହା ମଧ୍ୟରୁ ମଧ୍ୟଭାରତର ଛୋଟନାଗପୁର ଅଞ୍ଚଳରେ ବାସ କରୁଥିବା ମୁଣ୍ଡା ଜାତିର ବଂଶ କଥାଟି ଏଠାରେ ଦିଆଗଲା । ପୁଣ୍ଡରୀକ ନାଗ ନାମକ ଜଣେ କ୍ଷତ୍ରୀୟ କାଶୀରେ ଜଣେ ବ୍ରାହ୍ମଣ କନ୍ୟାଙ୍କୁ ବିବାହ କଲେ । କେତେକ ଅସୁବିଧା ଯୋଗୁଁ ସେମାନେ କାଶୀଧାମ ଛାଡି ମଧ୍ୟଭାରତ ଆଡକୁ ଯାତ୍ରା କଲେ । ପଥରେ ଶୁତିଆମ୍ବା ବା ଚୁତୀଆମ୍ବା ନାମକ ସ୍ଥାନରେ ତାଙ୍କର ଏକ ପୁତ୍ର ସନ୍ତାନ ଜାତହେଲା । ସେଠାରେ ବାସକରୁଥିବା ମଦରାମୁଣ୍ଡା ଓ ହଙ୍ଗରାମୁଣ୍ଡା ନାମଧେୟ ଦୁଇଜଣ ଗ୍ରାମ ମୁଖିଆ ପୁତ୍ରଟିକୁ ପାଳନ କରିବା ଦାୟିତ୍ୱ ନେଲେ ଏବଂ ପିଲାଟିର ନାମ ଦେଲେ 'ଫଣିମୁକୁଟ' । କିଛି କାଳ ପରେ ପିଲାଟି ଏକ ବଳବାନ ଯୁବକ ହୋଇ ସେହି ସ୍ଥାନ ଚୁତିଆ-ନାଗପୁର ଶାସନ କଲେ । ସେତେବେଳେ ତାଙ୍କ ନାମ ହେଲା ଫଣିମୁକୁଟ ରାୟ । ଗବେଷକଙ୍କ ମତରେ ଶୃତୀଆମ୍ବା ନାମଟି ଶୁତିଆ, ଚୁତିଆ ଓ ପରେ ଚୁତରୁ, ଛୋଟନାଗପୁରରେ ରୂପାନ୍ତରିତ ହୋଇଛି । ଏହି ଅଞ୍ଚଳର ଅନେକ ମୁଣ୍ଡା ଆଦିବାସୀ ନିଜକୁ ଫଣି ମୁକୁଟ ରାୟଙ୍କ ବଂଶଧର ବୋଲାଇ ଥାଆନ୍ତି । ସେହିପରି ଛତିଶଗଡ ଅଞ୍ଚଳରେ ଖ୍ରୀ.୧୧ଶ ଶତାବ୍ଦୀରେ ଶାସନ କରୁଥିବା ଫଣୀନାଗ ରାଜବଂଶ ମଧ୍ୟ ଫଣିମୁକୁଟ ରାୟଙ୍କ ବଂଶଧର ବୋଲି କେତେକ ଅଭିଲେଖରୁ ଜଣାଯାଏ ।





ଉତ୍ତରପ୍ରଦେଶ, ଦେଓଗଡ, ଦଶାବତାର ମନ୍ଦିରର ଗଜେନ୍ଦ୍ରମୋକ୍ଷ ମୂର୍ତ୍ତିରେ ନାଗ, ଆନୁମାନିକ ଖ୍ରୀ.୬ଷ୍ଠ ଶତାବ୍ଦୀ ।



# ବୌଦ୍ଧଧର୍ମ ଓ ନାଗଗୋଷ୍ଠୀ

ଗୌତମ ବୁଦ୍ଧଙ୍କ ଜନ୍ମ ଓ ବୌଦ୍ଧ ଧର୍ମର ପ୍ରଚାର ବେଳକୁ ବିଭିନ୍ନ ସମ୍ପ୍ରଦାୟର ନାଗଗୋଷ୍ଠୀ ଭାରତର ବହୁ ଅଞ୍ଚଳରେ ବସବାସ କରୁଥିଲେ । ଏମାନଙ୍କ ମଧ୍ୟରୁ ଅନେକ ଉଗ୍ର ପ୍ରକୃତିର ଥିବାରୁ ଗୌତମବୁଦ୍ଧ ସେମାନଙ୍କୁ ଦୀକ୍ଷା ଦେବା ନିମନ୍ତେ ବାରଣ କରିଥିଲେ । ତେବେ, ବୌଦ୍ଧ ଧର୍ମର ସଂସ୍ପର୍ଶରେ ଆସି ଏଥିମଧ୍ୟରୁ ଅନେକଙ୍କ ଆଚରଣରେ ପରିବର୍ତ୍ତନ ହେବାଯୋଗୁଁ ଧୀରେ ଧୀରେ ସେମାନଙ୍କୁ ସଂଘ ମଧ୍ୟରେ ଗ୍ରହଣ କରାଗଲା । ଏହି ନାଗଗୋଷ୍ଠୀ ବିଭିନ୍ନ ଭାବରେ ବୁଦ୍ଧ ତଥା ସଂଘର ସେବା କରିଛନ୍ତି । ବହୁ ବୌଦ୍ଧ ଗ୍ରନ୍ଥର ଆଖ୍ୟାନରେ ଏହା ଲିପିବଦ୍ଧ ହୋଇଛି । ଏହା ବ୍ୟତୀତ ବୌଦ୍ଧ କଳା ଓ ସ୍ଥାପତ୍ୟରେ ମଧ୍ୟ ଏହା ପ୍ରତିଫଳିତ ହୋଇଛି । ଏଥିମଧ୍ୟରୁ କେତେକ ଐତିହାସିକ ଘଟଣା ଓ ଅନ୍ୟ କେତେକ ଧାର୍ମିକ -କାଳ୍ପନିକ ବିଷୟ ବୋଲି ଅନୁମାନ କରାଯାଏ । ଏଠାରେ ବୌଦ୍ଧ ଧର୍ମରେ ନାଗ ଗୋଷ୍ଠୀର ଭୂମିକା ସମ୍ପର୍କିତ କେତେକ ବିଷୟ ଉପସ୍ଥାପନ କରାଗଲା ।

## ଗୌତମଙ୍କ ଜନ୍ମ ଓ ନାଗ

ଗୌତମ ଜନ୍ମ ହେବା ପୂର୍ବରୁ ତାଙ୍କ ମାତା ମାୟାଦେବୀ ନିଜ ପୈତୃକ ଗ୍ରାମ ଦେବଦହ ଯିବା ନିମନ୍ତେ ବାହାରିଲେ । ବାଟରେ ଲୁମ୍ବିନୀ ନାମକ ଏକ ବନଉଦ୍ୟାନରେ ସେ ପ୍ରସବ ପୀଡା ଅନୁଭବ କଲେ ଏବଂ ଗୋଟିଏ ଶାଳବୃକ୍ଷର

---

ଚିତ୍ର : କର୍ଣ୍ଣାଟକ, ସନ୍ନତି, ବୌଦ୍ଧକୀର୍ତ୍ତିର ନାଗଫଳକ, ଆନୁମାନିକ ଖ୍ରୀ. ୧ମ ଶତାବ୍ଦୀ ।

ଶାଖାକୁ ଧରି ପୀଡା ସହିବା ସହ ସେଠାରେ ଗୌତମଙ୍କୁ ଜନ୍ମଦେଲେ । ଏହି ସମୟରେ ନନ୍ଦ ଓ ଉପନନ୍ଦ ନାମକ ଦୁଇଜଣ ନାଗରାଜ ସେଠରେ ଉପସ୍ଥିତ ହୋଇ ଶୀତଳ ଓ ଉଷ୍ମଜଳ ଦ୍ୱାରା ଶିଶୁ ଗୌତମଙ୍କୁ ସ୍ନାନ କରାଇଥିଲେ । 'ଲଳିତ ବିସ୍ତାର' ବୌଦ୍ଧ ଗ୍ରନ୍ଥରେ ନାଗ-ନନ୍ଦ ଓ ଉପନନ୍ଦଙ୍କୁ ସ୍ୱର୍ଗୀୟ ଦେବଦୂତ ଭାବେ ବର୍ଣ୍ଣନା କରାଯାଇଛି । ଲୁମ୍ବିନୀ ବନର ଯେଉଁଠାରେ ଏହି ଘଟଣା ଘଟିଥିଲା, ମୌର୍ଯ୍ୟ ସମ୍ରାଟ ଅଶୋକ ସେଠାରେ ଏକ ଶିଳାସ୍ତମ୍ଭ ସ୍ଥାପନ କରି ତାହା ଉପରେ ଏକ ଅଭିଲେଖ ଖୋଦନ କରାଇଛନ୍ତି । ଚୀନ ପରିବ୍ରାଜକ ହୁଏନ୍‌ସାଂ ଏହି ସ୍ଥାନ ପରିଦର୍ଶନ କରିବା ସହ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଏହା ଉଲ୍ଲେଖ କରିଛନ୍ତି । ମଥୁରାର ଏକ ବୌଦ୍ଧ କୀର୍ତ୍ତିରେ ଏହି ଦୃଶ୍ୟ ଖୋଦିତ ହୋଇଛି ।

## ଉରୁବିଲ୍ୱ ତପସ୍ୟା ସ୍ଥଳୀରେ ନାଗ

ଉରୁବିଲ୍ୱ ବା ଉରୁବେଳା ବନରେ ବୌଧିସତ୍ତ୍ୱ ଦୀର୍ଘଦିନ ଉପବାସ ଓ ତପସ୍ୟା କରି ଦୁର୍ବଳ ହୋଇପଡିଥିଲେ । ଏପରିକି, ନିରଞ୍ଜନା ନଦୀରେ ସ୍ନାନବେଳେ ନଦୀ ସ୍ରୋତରେ ଭାସିଯାଉଥିଲେ । ସେ ସ୍ନାନ କରି ନଦୀର ବାଲୁକା ଉପରେ ଉପବେଶନ କରିବାକୁ ଯାଉଥିବାବେଳେ ନଦୀ ମଧ୍ୟରେ ଥିବା ନାଗରାଜ ସାଗରଙ୍କ କନ୍ୟା ଏକ ରତ୍ନ ସିଂହାସନ ଆଣି ତାଙ୍କ ନିକଟରେ ପହଞ୍ଚିଲେ । ବୁଦ୍ଧ ତାହା ଉପରେ ଆସନ ଗ୍ରହଣ କଲେ । ଏହି ସମୟରେ ନିକଟସ୍ଥ ଗ୍ରାମର ଜଣେ ଶ୍ରେଷ୍ଠୀଙ୍କ କନ୍ୟା ସୁଜାତା ଏକ ସୁବର୍ଣ୍ଣ ପାତ୍ରରେ ପୂଜା ନିମନ୍ତେ ଦୁଗ୍ଧ କିମ୍ବା ମଧୁପାୟସ ଆଣିଥିଲେ । ସେ ତାହା ବୁଦ୍ଧଙ୍କୁ ପ୍ରଦାନ କଲେ । ବୁଦ୍ଧ ମଧୁପାୟସ ଭକ୍ଷଣ କରି ପାତ୍ରଟିକୁ ନଦୀକୁ ଫିଙ୍ଗିଦେବାବେଳେ ଇନ୍ଦ୍ର ଗରୁଡ ରୂପରେ ପାତ୍ରଟିକୁ ଅପହରଣ କରିବାକୁ ଚେଷ୍ଟା କଲେ । କିନ୍ତୁ ସେ ସେଥିରେ ସଫଳ ହେଲେନାହିଁ । ପରମୁହୂର୍ତ୍ତରେ ସେ ନାଗରାଜ ସାଗରଙ୍କୁ ଅନୁରୋଧ କରି ପାତ୍ରଟିକୁ ପାଇଲେ ଏବଂ ତାହା ସ୍ୱର୍ଗକୁ ନେଇ ତାର ପୂଜା କଲେ । ଯେଉଁ ରତ୍ନ ସିଂହାସନରେ ଗୌତମବୁଦ୍ଧ ଆସନ ଗ୍ରହଣ କରିଥିଲେ ତାହା ନାଗକନ୍ୟା ନିଜ ପ୍ରାସାଦକୁ ନେଇ ତା'ର ପୂଜା କଲେ ।

## ନାଗରାଜ ମୁଚଲିନ୍ଦ

ଗୌତମ ଏକ ଅଶ୍ୱତ୍ଥ ବୃକ୍ଷମୂଳେ ତପସ୍ୟା କରି ଜ୍ଞାନ ପ୍ରାପ୍ତ କଲେ । ସେ ଜାଗ୍ରତ ହେବା ପରେ ପୁନଶ୍ଚ ତପରତ ହେବାପାଇଁ ଇଚ୍ଛାକଲେ । ତପ ସମୟରେ ହଠାତ ବର୍ଷା, ବତାସ ମାଡିଆସିଲା । ସେହି ଅରଣ୍ୟ ମଧ୍ୟରେ ବାସ କରୁଥିବା ମୁଚଲିନ୍ଦ ନାଗରାଜ ଏହା ଜାଣିପାରି ବୁଦ୍ଧଙ୍କ ସେବା କରିବା ନିମନ୍ତେ ତତ୍ପର ହୋଇଉଠିଲେ ।



ସର୍ପଲାଞ୍ଛନଯୁକ୍ତ ବୌଦ୍ଧ ଅମୋଘସିଦ୍ଧି ମୂର୍ତ୍ତି, ଆନୁମାନିକ ୮ମ ଶତାବ୍ଦୀ, ଓଡିଶା ରାଜ୍ୟ ସଂଗ୍ରହାଳୟ ।

ସେ ବୁଦ୍ଧଙ୍କ ନିକଟକୁ ଯାଇ ନିଜ କୁଣ୍ଡଳୀରେ ତାଙ୍କ ଶରୀରକୁ ଆବୃତ କରିବା ସହିତ ବୁଦ୍ଧଙ୍କ ଉପରେ ନିଜ ଫଣାଗୁଡିକ ଛତ୍ର ସଦୃଶ ପ୍ରସାରିତ କରି ରଖିଲେ । ବର୍ଷା, ବତାସ ଅନ୍ତେ ମୁଚଲିନ୍ଦ ଏକ ବ୍ରାହ୍ମଣ ବେଶରେ ନତଯାନୁ ହୋଇ ନମସ୍କାର ମୁଦ୍ରାରେ ବୁଦ୍ଧଙ୍କ ସମୀପରେ ଉଭାହେଲେ । ବୁଦ୍ଧ ନାଗରାଜ ମୁଚଲିନ୍ଦଙ୍କ ଏହି ସେବାରେ ସନ୍ତୁଷ୍ଟ ହୋଇ ତାଙ୍କ ଗୃହରେ କିଛିକାଳ ଅବସ୍ଥାନ କରିଥିଲେ ।

ବୌଦ୍ଧଗ୍ରନ୍ଥ ବିନୟପିଟକ, ଲଳିତବିସ୍ତାର, ନିଦାନକଥା ଓ ମହାବସ୍ତୁରେ ଏହି ବିଷୟ କେତେକ ତଥ୍ୟଗତ ଭିନ୍ନତା ସହ ନିଜ ନିଜ ଶୈଳୀରେ ବର୍ଣ୍ଣିତ ହୋଇଛି । ମୂର୍ତ୍ତିକଳାରେ ବୁଦ୍ଧଙ୍କ ମସ୍ତକ ଉପରେ ସର୍ପର ପଞ୍ଚ କିମ୍ବା ସପ୍ତ ଫଣାଥିବା କୃତିଗୁଡିକୁ 'ମୁଚଲିନ୍ଦ ବୁଦ୍ଧ' କୁହାଯାଏ । ଏହା ବ୍ୟତୀତ ଭାରତର କେତେକ ସ୍ଥାନରେ ଉପରୋକ୍ତ ଆଖ୍ୟାନର ବର୍ଣ୍ଣନାତ୍ମକ ଚିତ୍ର ଓ ମୂର୍ତ୍ତିକଳା ମଧ ଦେଖିବାକୁ ମିଳେ । ତେବେ, ମଧଭାରତର ସାଞ୍ଚି ଓ ନାଗାର୍ଜୁନକୋଣ୍ଡା ଠାରେ ଥିବା ଏହି ରଚନାଗୁଡିକ ସୁପରିଚିତ । ଓଡିଶାର ଲଳିତଗିରି ଓ ବୌଦ୍ଧ ଜିଲ୍ଲାର ଗଣିଆପଲ୍ଲୀଠାରେ 'ମୁଚଲିନ୍ଦ ବୁଦ୍ଧ' ମୂର୍ତ୍ତି ରହିଛି ।

## ଏଲାପତ୍ର ନାଗ

ଗୌତମ ବୁଦ୍ଧଙ୍କ ଜନ୍ମ ପୂର୍ବର କଥା । ଜଣେ ବ୍ରାହ୍ମଣ ଯୁବକ 'କାଶ୍ୟପ ବୁଦ୍ଧ'ଙ୍କ ଶିଷ୍ୟ ଥିଲେ । ସେ ଏକ ଏଲା ବା ଏଳା ବୃକ୍ଷ ଛେଦନ କରିବାରୁ ପର ଜନ୍ମରେ ନାଗ ଯୋନିରେ ବା ନାଗବଂଶରେ ଜନ୍ମ ହୋଇ ତକ୍ଷଶିଳାର ରାଜା ହେଲେ । ସେତେବେଳେ ତାଙ୍କ ନାମ ଥିଲା ଏଲାପତ୍ର । ଗୌତମବୁଦ୍ଧ 'ତୁଷିତ' ବନରେ ବା



ମଥୁରାରୁ ପ୍ରାପ୍ତ ନାଗରାଜ ଏଲାପତ୍ର, ଆନୁମାନିକ ଖ୍ରୀ., ୧ମ ଶତାବ୍ଦୀ।

ତୁଷିତ ସ୍ୱର୍ଗରେ ତପସ୍ୟାରତ ଥିବାବେଳେ ତାଙ୍କ ମୁଖରୁ ଏକ ସ୍ତବନ ଉଚ୍ଚାରିତ ହୋଇ ତାହା ଏକ ଶିଳାଖଣ୍ଡରେ ଲିପିବଦ୍ଧ ହେଲା। ଏଲାପତ୍ରଙ୍କ ପରମ ମିତ୍ର ନାଗରାଜା ସୁବର୍ଣ୍ଣପ୍ରଭାସ ଏକଥା ଜାଣିପାରି ଏଲାପତ୍ରଙ୍କୁ କହିଲେ। ସେହି ଶିଳାଲେଖର ଅର୍ଥ ବୁଝିବା ପାଇଁ ଦୁଇ ମିତ୍ର ଆଗ୍ରହ ପ୍ରକାଶ କଲେ। ଏଲାପତ୍ର ଏକ ବ୍ରାହ୍ମଣ ଯୁବକ ବେଶରେ ବହୁସ୍ଥାନ ଭ୍ରମଣ କରି ବହୁ ବିଦ୍ୱାନଙ୍କୁ ପୁଛାକରି ମଧ ତାହାର ଅର୍ଥ ଜାଣି ପାରିଲେ ନାହିଁ। ଶେଷରେ ସେ ବାରାଣସୀରେ 'ନାଳକ' ନାମକ ଜଣେ ଋଷିଙ୍କଠାରୁ ଜାଣିବାକୁ ପାଇଲେ ଯେ, ଧରାପୃଷ୍ଠରେ ଗୌତମବୁଦ୍ଧ ଜନ୍ମ ଗ୍ରହଣ କରିଛନ୍ତି ଏବଂ ସେ ଏହାର ସ୍ରଷ୍ଟା ହୋଇଥିବାରୁ ସେ ହିଁ ଏହାର ସମାଧାନ କରିପାରିବେ। ସେ ସମୟରେ ବୁଦ୍ଧ ବାରାଣସୀ ନିକଟ ଋଷିପତନ ନାମକ ସ୍ଥାନରେ ଅବସ୍ଥାନ କରୁଥିଲେ।

ଏହା ଜାଣିବା ପରେ ଏଲାପତ୍ର ଛଦ୍ମବେଶରେ ଗୌତମବୁଦ୍ଧଙ୍କ ନିକଟରେ ପହଞ୍ଚିଲେ। ବୁଦ୍ଧଦେବ ଏଲାପତ୍ରଙ୍କ ଛଦ୍ମବେଶ ବିଷୟ ଜାଣିପାରି ତାଙ୍କୁ ଭର୍ତ୍ସନା କଲେ। ଏହାପରେ ଏଲାପତ୍ର ନିଜ ନାଗରାଜ ବେଶରେ ବୁଦ୍ଧଙ୍କ ଆଗରେ ଉଭାହେଲେ। ସେତିକିବେଳେ ଏଲାପତ୍ରଙ୍କ ମସ୍ତକ ଭାଗଟି ବାରଣାସୀରେ ଥିବାବେଳେ ତାଙ୍କ ଲାଞ୍ଜଟି ତକ୍ଷଶିଳାଯାଏ ଲମ୍ବିଥିଲା। ଏହାପରେ ବୁଦ୍ଧଦେବ ଏଲାପତ୍ରଙ୍କୁ କହିଲେ "ତୁମେ ଅପେକ୍ଷା କର। ଭବିଷ୍ୟତର ବୁଦ୍ଧ 'ମୈତ୍ରେୟ' ତୁମକୁ ଏହାର ଅର୍ଥ ବୁଝାଇ ଦେବେ।" ଏହି ଆଖ୍ୟାନଟି ପାଲି ଓ ସଂସ୍କୃତରେ ଲିଖିତ ବିଭିନ୍ନ ବୌଦ୍ଧଗ୍ରନ୍ଥରେ ଭିନ୍ନ ଭିନ୍ନ ଭାବରେ ଉଲ୍ଲେଖ ଅଛି। ଚୀନ ପରିବ୍ରାଜକ ହୁଏନ୍‌ସାଂଙ୍କ ଲିଖିତ ତଥ୍ୟ ଅନୁଯାୟୀ ଏହି ବିଷୟରେ ନାଗରାଜା ଏଲାପତ୍ର ଓ ବୁଦ୍ଧଙ୍କ ମଧରେ କଥୋପକଥନ ହେଲା।

ନାଗରାଜ ଏଲାପତ୍ର ବୁଦ୍ଧଙ୍କ ଦୟାରୁ ଦୀକ୍ଷା ଗ୍ରହଣ କରି ତ୍ରିଶରଣ ପ୍ରାପ୍ତ କରି ନିଜ ରାଜ୍ୟ ତକ୍ଷଶିଳାକୁ ପ୍ରତ୍ୟାବର୍ତ୍ତନ କଲେ ।

## କାଶ୍ୟପ ଋଷିଭ୍ରାତାଙ୍କ ଆଶ୍ରମରେ ବୁଦ୍ଧ ଓ ନାଗ

ଉରୁବିଲ୍ୱ ବନର ଏକ ଆଶ୍ରମରେ ତିନି କାଶ୍ୟପଗୋତ୍ରୀ ଋଷି ଭ୍ରାତା ରହୁଥିଲେ । ସେମାନଙ୍କ ନାମ ଥିଲା ଉରୁବିଲ୍ୱ କାଶ୍ୟପ, ନଦୀ କାଶ୍ୟପ ଓ ଗୟା କାଶ୍ୟପ । ବାରାଣସୀର ମୃଗବନରେ ବୁଦ୍ଧଦେବ ଧର୍ମଚକ୍ର ପ୍ରବର୍ତ୍ତନ ସମାପନ କରି ଉରବିଲ୍ୱ ଗମନ କଲେ । କାଶ୍ୟପଙ୍କ ଆଶ୍ରମ ନିକଟରେ ସନ୍ଧ୍ୟା ହୋଇଯିବାରୁ ସେ ଉରୁବିଲ୍ୱ କଶ୍ୟପଙ୍କୁ ତାଙ୍କ 'ଅଗ୍ନିଶରଣ କୁଟୀର' ବା ଯଜ୍ଞଶାଳାରେ ରାତ୍ରିଯାପନ କରିବା ନିମନ୍ତେ ଅନୁରୋଧ କଲେ । ଏଥିରେ ଚିନ୍ତିତ ହୋଇ ଋଷି କହିଲେ " ସେହି ଯଜ୍ଞଶାଳାରେ ବହୁକାଳ ହେଲା ଏକ ପ୍ରଚଣ୍ଡ ମନ୍ତ୍ରଶକ୍ତି ଓ ହଳାହଳ ଧାରଣ କରିଥିବା ନାଗ ରହୁଛି । ସେ କାଳେ ଆପଣଙ୍କର କିଛି କ୍ଷତି କରିବ । ବୁଦ୍ଧଦେବ କାଶ୍ୟପଙ୍କୁ ଆଶ୍ୱାସନା ଦେଇ କହିଲେ " ନାଗ ମୋର କିଛି କ୍ଷତି କରିପାରିବ ନାହିଁ । ନିର୍ଭୟରେ ମୋତେ ସେଠାରେ ରହିବା ପାଇଁ ଆପଣ ଅନୁମତି ଦିଅନ୍ତୁ ।" ଏଥିରେ ଋଷି ସମ୍ମତି ଜଣାଇଲେ ।

ବୁଦ୍ଧଦେବ ଯଜ୍ଞଶାଳାରେ ପ୍ରବେଶ କରି ଏକ ଆସନ ଉପରେ ଧ୍ୟାନରତ ହେଲେ । ସେଠାରେ ଥିବା ନାଗ ଏହା ଜାଣିପାରି ନିଜର ଦୁଷ୍ଟ ଶକ୍ତି ପ୍ରୟୋଗ କରି ବହୁବାଧା ସୃଷ୍ଟି କଲା । ବୁଦ୍ଧଦେବ ଏହିସବୁ ବାଧାବିଘ୍ନକୁ ଖଣ୍ଡନ କରିବା ସହିତ ନିଜ ମହାଶକ୍ତି ବଳରେ ନାଗକୁ ଆୟତ କରିବାକୁ ଚେଷ୍ଟା କଲେ । ଏହି ମନ୍ତ୍ର ଯୁଦ୍ଧ ଦ୍ୱାରା ସେଠାରେ ବହୁ ଭୟଙ୍କର ଓ ଆଶ୍ଚର୍ଯ୍ୟଜନକ ଘଟଣା ସୃଷ୍ଟି ହେଲା । ଅବଶେଷରେ ବୁଦ୍ଧ ନାଗକୁ ନିଜ ଭିକ୍ଷାପାତ୍ର ମଧରେ ବନ୍ଧନ କରି ପ୍ରଭାତରେ ଯଜ୍ଞଶାଳାରୁ ବାହାରକୁ ଆସିଲେ । ଏଥିରେ କାଶ୍ୟପ ଋଷିଭ୍ରାତାମାନେ ଆଶ୍ଚର୍ଯ୍ୟ ହେବା ସହିତ ଗୌତମ ବୁଦ୍ଧଙ୍କ ଦିବ୍ୟଶକ୍ତିର ପରିଚୟ ପାଇଲେ । ନାଗ ମନୁଷ୍ୟ ରୂପ ଧାରଣ କରି ବୁଦ୍ଧଙ୍କ ଶରଣାପନ୍ନ ହେଲା । ତିନି କାଶ୍ୟପ ଋଷି ଭ୍ରାତା ଓ ତାଙ୍କ ଅନୁଗାମୀମାନେ ବୁଦ୍ଧଙ୍କଠାରୁ ଦୀକ୍ଷା ଗ୍ରହଣ କରି ସଂଘର ଆଶ୍ରୟ ନେଲେ । ଏହି ଆଖ୍ୟାନଟି ସାଞ୍ଚି, ଅମରାବତୀ, ନାଗାର୍ଜୁନକୋଣ୍ଡା ଇତ୍ୟାଦି ସ୍ଥାନର ପ୍ରାଚୀନ ବୌଦ୍ଧ କଳା ଓ ସ୍ଥାପତ୍ୟରେ ବିଭିନ୍ନ ଭାବରେ ସ୍ଥାନ ପାଇଛି ।

## ନାଗ ଅପଲାଳ

ଉଦ୍ଧ୍ୟାନ ରାଜ୍ୟର ରାଜଧାନୀ ମଙ୍ଗଳପୁର । ଏହି ରାଜ୍ୟର ଉତ୍ତରପଶ୍ଚିମ ଦିଗରେ ଥିବା ପର୍ବତରୁ ଏକ ପ୍ରସ୍ରବଣ ପ୍ରବାହିତ ହେଉଥିଲା । ସେଠାରେ ନାଗ ଅପଲାଳ ବାସ କରୁଥିଲେ । ସେ ପୂର୍ବଜନ୍ମରେ କାଶ୍ୟପ ବୁଦ୍ଧଙ୍କ ଶିଷ୍ୟ ଗଙ୍ଗୀ ନାମରେ ପରିଚିତ ଥିଲେ । ତାଙ୍କ ଦୟାରୁ ପ୍ରସ୍ରବଣରୁ ନିରନ୍ତର ଜଳ ପ୍ରବାହିତ ହେଉଥିଲା ଏବଂ ଉଦ୍ଧ୍ୟାନବାସୀ ପର୍ଯ୍ୟାପ୍ତ ଖାଦ୍ୟଶସ୍ୟ ଉତ୍ପାଦନ କରି ସୁଖରେ ରହୁଥିଲେ । ଏଥିନିମନ୍ତେ ସେମାନେ ତାଙ୍କୁ ଉତ୍ପାଦନର ଏକ ନିର୍ଦ୍ଦିଷ୍ଟ ଭାଗ ଦେଉଥିଲେ । ସମୟକ୍ରମେ ସେମାନେ ଗଙ୍ଗୀଙ୍କ ଶସ୍ୟ ପାଉଣା ବନ୍ଦ କରିଦେଲେ । ଏଥିରେ ଗଙ୍ଗୀ କ୍ରୋଧାନ୍ୱିତ ହୋଇ ପ୍ରସ୍ରବଣର ଜଳରେ ହଳାହଳ ବିଷ ଛାଡିବା ଦ୍ୱାରା ସେହି ଜଳ ଶ୍ୱେତ ପ୍ରବାହରେ ପରିଣତ ହୋଇ ଶସ୍ୟ ନଷ୍ଟ କରିଦେଲା । ରାଜ୍ୟରେ ଅନଟନ ଦେଖାଦେଲା । ଲୋକେ ବହୁକଷ୍ଟ ଭୋଗ କଲେ । ବୁଦ୍ଧଦେବ ଏହା ଜାଣିପାରି ନାଗ ନିକଟରେ ପହଞ୍ଚିଲେ ଏବଂ ଲୋକଙ୍କର ଅନିଷ୍ଟ କରିବା କାର୍ଯ୍ୟରୁ ନିବୃତ ହେବାକୁ କହି ନାଗକୁ ଦୀକ୍ଷା ଦେଲେ । ବୁଦ୍ଧଙ୍କ ଦୟାରୁ ତା'ର ମନ ପରିବର୍ତ୍ତନ ହେଲା । ତେବେ, ନାଗ ବୁଦ୍ଧଙ୍କୁ ଅନୁରୋଧ କରି କହିଲା " ପ୍ରଭୁ, ମୋତେ ଏପରି ଆଦେଶ ହେଉ, ପ୍ରତି ବାରବର୍ଷରେ ଥରେ ମୁଁ ଏହି ସ୍ଥାନର ଶସ୍ୟ, ଜୀବନ ନିର୍ବାହ ନିମନ୍ତେ ପାଇବି ।" ବୁଦ୍ଧ ଏଥିରେ ସମ୍ମତି ଜଣାଇଲେ । ଏହି ଭାବରେ ପୂର୍ବର ସେହି ଶ୍ୱେତ ପ୍ରସ୍ରବଣଟି ଶ୍ୱେତ୍‌ନଦୀରେ ରୂପାନ୍ତର ହେବା ସହିତ ପ୍ରତି ବାରବର୍ଷରେ ଏଥିରେ ବନ୍ୟା ଆସେ ଏବଂ ପ୍ରଭୂତ ଶସ୍ୟ ହାନିହୁଏ ।

କେତେକ ବିଦ୍ୱାନଙ୍କ ମତରେ ଉପରୋକ୍ତ ଉଦ୍ଧାନ ରାଜ୍ୟଟି 'ଉଡିୟନ ବା ଓଡ୍ରଦେଶ' (ଓଡିଶା), ମାତ୍ର ଏଠାରେ ଶ୍ୱେତ୍‌ନଦୀ ପ୍ରବାହିତ ହେଉନଥିବାରୁ ଏହି ମତ ଗ୍ରହଣଯୋଗ୍ୟ ନୁହେଁ । ଉତ୍ତରପଶ୍ଚିମ ଭାରତର ଏକ ଅଞ୍ଚଳ ପୂର୍ବେ ଗାନ୍ଧାର ରାଜ୍ୟ ନାମରେ ପରିଚିତ ଥିଲା । ସେଠାରେ ଶ୍ୱେତ୍‌ନଦୀ ବା ସ୍ୱାତନଦୀ ରହିଛି । ଅଶୋକ ଓ କନିଷ୍କଙ୍କ ସମୟରେ ସେଠାରେ ବୌଦ୍ଧଧର୍ମର ପ୍ରଚାର ପ୍ରସାର ଘଟିଥିଲା । ତେଣୁ ଆଖ୍ୟାନଟି ସେହି ସ୍ଥଳ ପ୍ରତି ପ୍ରଯୁଜ୍ୟ ବୋଲି ମନେ କରାଯାଏ ।

## ନାଗ ଗିରିକ ଓ ବିଦ୍ୟୁତ୍‌କ୍ରାଳ ପ୍ରସଙ୍ଗ

ମଗଧର ରାଜଧାନୀ ରାଜଗୃହ ଥିବାବେଳେ ତାହାର ରାଜା ଥିଲେ ବିମ୍ବିସାର । ବୁଦ୍ଧଦେବ ରାଜଗୃହରେ ବାସ କରୁଥିବାବେଳେ ଗିରିକ ଓ ବିଦ୍ୟୁତ୍‌କ୍ରାଳ ନାମକ ଦୁଇଜଣ ନାଗ ପ୍ରତ୍ୟହ ତାଙ୍କୁ ସମ୍ମାନ ସହକାରେ ଦର୍ଶନ କରିଥାନ୍ତି । ଏକଦା ରାଜା

ବିମ୍ବିସାର ବୁଦ୍ଧଙ୍କ ଦର୍ଶନ ନିମନ୍ତେ ଆସିଥିଲେ । ନାଗଦ୍ୱୟ ବୁଦ୍ଧଙ୍କୁ ସମ୍ମାନ ଜଣାଇଥିବା ବେଳେ ରାଜାଙ୍କୁ ଏକ ପ୍ରକାର ଅବଜ୍ଞା କରିଥିଲେ । ଏଥିରେ ବିମ୍ବିସାର କ୍ଷୁବ୍ଧ ହୋଇ ନାଗଦ୍ୱୟଙ୍କୁ ରାଜ୍ୟରୁ ବିତାଡିତ କଲେ । ଏହାପରେ ରାଜ୍ୟରେ ଅନାବୃଷ୍ଟି ଯୋଗୁଁ ମରୁଡି ପଡିଲା । ବିମ୍ବିସାର ବୁଦ୍ଧଙ୍କ ନିକଟକୁ ଯାଇ ଏହାର କାରଣ ଓ ପ୍ରତିକାର ପଚାରିଲେ । ବୁଦ୍ଧଦେବ କହିଲେ ନାଗଦ୍ୱୟ ତୁମ ରାଜ୍ୟ ଛାଡି ଚାଲିଯାଇଥିବାରୁ ଏହି ଅବସ୍ଥା ହୋଇଛି । ବୁଦ୍ଧ ନାଗଦ୍ୱୟଙ୍କୁ ରାଜଗୃହକୁ ଡକାଇଲେ । ରାଜା ବିମ୍ବିସାର ସେମାନଙ୍କୁ କ୍ଷମା ପ୍ରାର୍ଥନା ସହ ସେମାନଙ୍କ ଇଛା ଅନୁସାରେ ଦୁଇଟି ନିବାସ ନିର୍ମାଣ କରିଲେ ଏବଂ ପ୍ରତ୍ୟେକ ବର୍ଷ ସେଠାରେ ଏକ ଯଜ୍ଞାନୁଷ୍ଠାନ ମଧ କରାଇଲେ । ଏହାଦ୍ୱାରା ରାଜ୍ୟରେ ପୁନଶ୍ଚ ବର୍ଷା ହୋଇ ଶସ୍ୟ ଉତ୍ପାଦନ ହେଲା ।

## ଶ୍ରୀବସ୍ତୀ ନଗରୀରେ ମହାପ୍ରାତିହାର୍ଯ୍ୟ ଓ ନାଗ

ଗୌତମବୁଦ୍ଧଙ୍କ ଧର୍ମଚକ୍ର ପ୍ରବର୍ତ୍ତନ ପରେ ପରେ ରାଜଗୃହର ଦଳେ ବୁଦ୍ଧ ବିରୋଧୀ ବୁଦ୍ଧଙ୍କୁ ପରୀକ୍ଷା କରିବା ନିମନ୍ତେ ଶ୍ରୀବସ୍ତିରେ ଏକ ବିରାଟ ସଭାର ଆୟୋଜନ କରିଥିଲେ । ଏଠାରେ ଦୁଇ ଗୋଷ୍ଠୀର ଶ୍ରେଷ୍ଠତ୍ୱ ପ୍ରମାଣିତ କରିବା ଥିଲା ମୁଖ୍ୟ ଲକ୍ଷ୍ୟ । ଏଠାରେ ନାଗରାଜ ନନ୍ଦ ଓ ଉପନନ୍ଦ ବୁଦ୍ଧଙ୍କ ନିମନ୍ତେ ମଣିମୁକ୍ତାଯୁକ୍ତ ସହସ୍ର ପାଖୁଡା ଥିବା ଏକ ବିଶାଳ ପଦ୍ମ ସୃଷ୍ଟି କରିଥିଲେ । ଗୌତମବୁଦ୍ଧ ଏହା ଉପରେ ବସି ବହୁ ଅଲୌକିକ ଘଟଣା ପ୍ରଦର୍ଶନ କରିଥିଲେ । ଏହାଦ୍ୱାରା ତାଙ୍କ ବିରୋଧୀମାନଙ୍କ



ବାରହୁତ, ବୌଦ୍ଧସ୍ତୂପର ଖୋଦିତ ମହାପ୍ରତିହାର୍ଯ୍ୟର ଦୃଶ୍ୟ, ଆନୁମାନିକ ଖ୍ରୀ.ପୂ. ୧ମ ଶତାବ୍ଦୀ ।

ଅବସ୍ଥା ଦିବାଲୋକରେ ଖଦ୍ୟୋତମାନଙ୍କ ଭଳି ହୋଇଥିଲା । ଏହି ଆଖ୍ୟାନଟି ପରବର୍ତ୍ତୀ ସମୟରେ ରଚିତ କେତେକ ବୌଦ୍ଧ ଗ୍ରନ୍ଥରେ କେତେକ ଭିନ୍ନତା ସହ ଉଲ୍ଲେଖ ଥିବାବେଳେ ବାରହୁତ୍ ଓ ସାରନାଥର ମୂର୍ତ୍ତିକଳାରେ ମଧ ଏହା ପ୍ରତିଫଳିତ ହୋଇଛି ।

## ରାମାଗାମା ସ୍ତୂପର ନାଗ ରକ୍ଷକ

ଗୌତମବୁଦ୍ଧଙ୍କ ମହାପ୍ରୟାଣ ପରେ ନେପାଳର ମଲ୍ଲମାନେ ବୁଦ୍ଧଙ୍କ ଦେହାବଶେଷ ରଖି ରାମାଗାମ ନାମକ ସ୍ଥାନରେ ଏକ ସ୍ତୂପ ନିର୍ମାଣ କରାଇଥିଲେ । ଏହି ସ୍ତୂପ ନିକଟରେ ଥିବା ସ୍ବଚ୍ଛଜଳର ହ୍ରଦରେ ଏକ ନାଗ ବାସ କରୁଥିଲେ । ସେ ପ୍ରତ୍ୟହ ସ୍ତୂପ ନିକଟକୁ ଆସି ତା'ର ଯତ୍ନ ନେବା ସହିତ ନିଜର ଶ୍ରଦ୍ଧାସୁମନ ଅର୍ପଣ କରୁଥିଲେ । ମୌର୍ଯ୍ୟ ସମ୍ରାଟ ଅଶୋକ ଏକଦା ଚିନ୍ତା କଲେ ଯେ, ବୁଦ୍ଧଙ୍କ ଦେହାବଶେଷ ଥିବା ବିଭିନ୍ନ ପ୍ରାଚୀନ ସ୍ତୂପରୁ ତାହା ସଂଗ୍ରହ କରି ନିଜ ରାଜଧାନୀରେ ଏକ ନୂତନ ସ୍ତୂପ ନିର୍ମାଣ କରାଇବେ । ଏଥିନିମନ୍ତେ ସେ ନିଜ ରାଜକର୍ମଚାରୀଙ୍କୁ ପଠାଇ କେତେକ ସ୍ତୂପରୁ ଦେହାବଶେଷ-ଧାତୁ ସଂଗ୍ରହ କରିଥିଲେ । ତେବେ, ରାମାଗାମା ସ୍ତୂପର ଧାତୁ ସଂଗ୍ରହ ନିମନ୍ତେ ସେ ନିଜେ ସେଠାରେ ଉପସ୍ଥିତ ହେଲେ । ସେଠାରେ ଥିବା ନାଗ ସମ୍ରାଟଙ୍କ ଆଗମନର କାରଣ ଜାଣିପାରି କୌଶଳରେ ତାଙ୍କୁ ଏହି କାର୍ଯ୍ୟରୁ ନିବୃତ୍ତି କରିବା ପାଇଁ ଚେଷ୍ଟା କଲା । ସେ ଅଶୋକଙ୍କ ସମ୍ମୁଖକୁ ଯାଇ ନିଜର ଭକ୍ତିପୂତ ସମ୍ମାନ ଜଣାଇବା ସହିତ ଆତିଥ୍ୟ ନିମନ୍ତେ ତାଙ୍କୁ ନିଜଗୃହକୁ ନିମନ୍ତ୍ରଣ କଲା । ସମ୍ରାଟ ନାଗର ଆତିଥ୍ୟରେ ସନ୍ତୁଷ୍ଟ ହୋଇଥିବାବେଳେ ନାଗ ସ୍ତୂପକୁ ନଭାଙ୍ଗିବା ନିମନ୍ତେ ସମ୍ରାଟଙ୍କୁ ଅନୁରୋଧ କଲା । ଅଶୋକ ନାଗର ହୃଦୟର ଭାବ ବୁଝିପାରି ସ୍ତୂପରୁ ବୁଦ୍ଧଙ୍କ ଦେହଧାତୁ ବାହାର କଲେ ନାହିଁ । ନାଗ ପୂର୍ବଭଳି ସ୍ତୂପକୁ ସୁରକ୍ଷା ଦେଇ ପୂଜାର୍ଚ୍ଚନା କଲା ।

ବିଭିନ୍ନ ବୌଦ୍ଧ ଗ୍ରନ୍ଥରେ ଧର୍ମ ସହିତ ନାଗମାନଙ୍କ ସମ୍ପର୍କିତ ଆଖ୍ୟାନଗୁଡିକ ବର୍ଣ୍ଣନାତ୍ମକ ଭାବରେ ଉପସ୍ଥାପିତ ହୋଇଛି । ଏଠାରେ ବିଷୟଗୁଡିକର ସଂକ୍ଷିପ୍ତସାର ମାତ୍ର ଦିଆଗଲା । ଏହି ଅଧ୍ୟୟନରୁ ସୂଚିତ ହୁଏ ଯେ, ପୂର୍ବେ ହିନ୍ଦୁ ବା ବ୍ରାହ୍ମଣ୍ୟ ଧର୍ମଠାରୁ ଦୂରେଇ ହୋଇପଡିଥିବା ନାଗଗୋଷ୍ଠୀ ଜନସାଧାରଣ ବୁଦ୍ଧଙ୍କ ଦ୍ୱାରା ପ୍ରଚାରିତ ସରଳ ଧର୍ମଧାରା ପ୍ରତି ଆକୃଷ୍ଟ ହୋଇଥିଲେ ଏବଂ ବୌଦ୍ଧଧର୍ମ ମଧ ସେମାନଙ୍କୁ ଉପଯୁକ୍ତ ସମ୍ମାନ ଦେଇଥିଲା । ଏହାଦ୍ୱାରା ନାଗଗୋଷ୍ଠୀ ବୁଦ୍ଧ ଓ ସଂଘ ସହିତ ଓତଃପ୍ରୋତ ଭାବେ ଜଡିତ ହୋଇ ପଡିଥିଲେ ।





# ଭାରତୀୟ ନାଗପୂଜା ପରମ୍ପରା

## କାଶ୍ମୀରର ନାଗ ସଂସ୍କୃତି

କାଶ୍ମୀରର ପ୍ରଖ୍ୟାତ ସଂସ୍କୃତ କବି କହ୍ଲଣଙ୍କ ରାଜତରଙ୍ଗିଣୀ ଓ ନୀଳମତ ପୁରାଣ ଅତ୍ୟନ୍ତ ଲୋକପ୍ରିୟ । ଏହି କବି ଖ୍ରୀ. ୧୨ଶ ଶତାବ୍ଦୀର ବୋଲି ଜଣାଯାଏ । ଉପରୋକ୍ତ ଦୁଇ ରଚନାରେ କଶ୍ମୀରରେ ପ୍ରାଚୀନ ନାଗ ସଂସ୍କୃତିର ବିଶଦ ବର୍ଣ୍ଣନା ରହିଛି, ଯେଉଁଥିରେ ପୌରାଣିକ ବିଷୟ ବ୍ୟତୀତ ଐତିହାସିକ ତଥ୍ୟ ମଧ ଦେଖିବାକୁ ମିଳେ । ରାଜତରଙ୍ଗିଣୀର ତଥ୍ୟ ଅନୁଯାୟୀ ନାଗମାନଙ୍କୁ କାଶ୍ମୀରରେ ଜଳ, ବର୍ଷା ତଥା ସମୃଦ୍ଧିର ଦେବତା ଭାବେ ପୂଜା କରାଯାଉଥିଲା । ପୂଜାରେ ନାଗମାନେ ସନ୍ତୁଷ୍ଟ ହୋଇ କାଶ୍ମୀର ଘାଟୀରେ ଠିକ୍ ବର୍ଷା କରାଇବାଦ୍ୱାରା ପର୍ଯ୍ୟାପ୍ତ ଶସ୍ୟ ଉତ୍ପାଦନ ହେଉଥିଲା । ଲୋକେ ସୁଖ ଶାନ୍ତିରେ ରହୁଥିଲେ । ନାଗଦେବତା ଅସନ୍ତୁଷ୍ଟ ହେଲେ ସେଠାରେ ପାର୍ବତ୍ୟ ଝଡ, ବନ୍ୟା, ଅତ୍ୟଧିକ ବରଫପାତ ଦ୍ୱାରା ବିଭିନ୍ନ ପ୍ରକାର ପ୍ରାକୃତିକ ଦୁର୍ବିପାକମାନ ସୃଷ୍ଟି ହେଉଥିଲା । ଏହି ଭାବରେ ଏହି କାବ୍ୟରେ ଜନଜୀବନ ସହିତ ନାଗ ପରମ୍ପରାର ନିବିଡ ସମ୍ପର୍କ ବର୍ଣ୍ଣିତ ହୋଇଛି ।

'ନୀଳମତ ପୁରାଣ' ସମ୍ପୂର୍ଣ୍ଣ ଭାବରେ ନାଗ ସଂସ୍କୃତି ଉପରେ ଆଧାରିତ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏଥିରେ ପ୍ରାୟ ୫୨୭ ନାଗଙ୍କ ନାମ ଉଲ୍ଲେଖ ଥିବାବେଳେ ନୀଳନାଗ ଏମାନଙ୍କ ମଧରେ ଶ୍ରେଷ୍ଠ ଓ ନାଗାଧିପତି ଭାବେ ପରିଚିତ । ଏକଦା ବୌଦ୍ଧ ଆଚାର୍ଯ୍ୟ ନାଗାର୍ଜୁନ ନୀଳନାଗଙ୍କ ପୂଜାକୁ ବିରୋଧ କରିଥିଲେ ।

---

ଚିତ୍ର: ଚତୁଃର୍ଭୂଜା ନାଗଦେବୀ, ବିହାର, ଆନୁମାନିକ ଖ୍ରୀ. ୧୦ମ ଶତାବ୍ଦୀ ।

ଏହାଦ୍ୱାରା କାଶ୍ମୀରରେ ଭୀଷଣ ବରଫପାତ ହେବା ସହିତ ଦୁର୍ଭିକ୍ଷ ପଡିଲା । ଏହି ବିପଦରୁ କାଶ୍ମୀରବାସୀଙ୍କୁ ଉଦ୍ଧାର କରିବା ନିମନ୍ତେ ଚନ୍ଦ୍ରଦେବ ନାମକ ଜଣେ ବ୍ରାହ୍ମଣ ତପସ୍ୟା ଓ ପୂଜାର୍ଚ୍ଚନା କରି ନୀଳନାଗଙ୍କୁ ସନ୍ତୁଷ୍ଟ କରାଇଲେ । ନୀଳନାଗ ଏଥିରେ ପ୍ରୀତ ହୋଇ ତାଙ୍କର ଏକ ସ୍ୱତନ୍ତ୍ର ପୂଜା ପ୍ରଚଳନ ନିମନ୍ତେ ନିର୍ଦ୍ଦେଶ ଦେଇ ପ୍ରଜାମାନଙ୍କ ମଙ୍ଗଳ କରିଥିଲେ । ପୁରାଣରେ ଏହିପରି ନାଗପୂଜାର ବିସ୍ତୃତ ବର୍ଣ୍ଣନା ଥିବା ସହିତ କାଶ୍ମୀରର ବିତସ୍ତା ନଦୀ ଓ ତତ୍‌ସଂଲଗ୍ନ ଅଞ୍ଚଳ ନାଗମାନଙ୍କ ମୁଖ୍ୟ ବାସସ୍ଥାନ ଥିଲା ବୋଲି ଉଲ୍ଲେଖ କରାଯାଇଛି । ଏହି ନଦୀର ଏକ ଗଭୀର ସ୍ଥାନକୁ ନୀଳନାଗଙ୍କ ନାମାନୁସାରେ ନୀଳକୁଣ୍ଡ କୁହାଯାଏ । ଏଠାରେ ନୀଳଙ୍କୁ ବୀରନାଗ ନାମରେ ମଧ ସମ୍ବୋଧନ କରାଯାଏ । ଏହା ବ୍ୟତୀତ ଏହି ପୁରାଣରେ ଅନନ୍ତନାଗ, ଶଙ୍ଖନାଗ, ପଦ୍ମନାଗ ଓ କର୍କୋଟକ ନାଗଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏହି ଭାବରେ କାଶ୍ମୀରର ଅନନ୍ତନାଗ ସହର ସର୍ପରାଜ ଅନନ୍ତଙ୍କ ଦ୍ୱାରା ଓ ପାର୍ବତ୍ୟ ଅଞ୍ଚଳରେ 'କକୋଦର' ସହର କର୍କୋଟକ ନାଗଙ୍କ ଦ୍ୱାରା ସ୍ଥାପିତ ବୋଲି ବିଶ୍ୱାସ ରହିଛି । ସେହିପରି କେଭିନ ନାମକ ଗ୍ରାମର ଏକ ଜଳାଶୟରେ ତକ୍ଷକ ନାଗଙ୍କୁ ପୂଜା କରାଯାଏ । ଏହା ସହିତ ଜୟବନ ନାମକ ସ୍ଥାନରେ ଥିବା ଏକ କୁଣ୍ଡକୁ ତକ୍ଷକ ନାଗଙ୍କ ବାସସ୍ଥାନ ବୋଲି ବିଶ୍ୱାସ କରାଯାଏ । ଏଠାରେ ପାଳିତ ହେଉଥିବା ଏକ ବାର୍ଷିକ ମେଳାରେ ବହୁତ ଲୋକ ଏକତ୍ର ହୋଇ ତକ୍ଷକ ନାଗଙ୍କ ପୂଜା କରିଥାଆନ୍ତି । ନୀଳମତ ପୁରାଣର ବର୍ଣ୍ଣନା ଅନୁଯାୟୀ ବିତସ୍ତା ନଦୀ ମଧ ତକ୍ଷକ ନାଗଙ୍କ ଲୀଳାସ୍ଥଳି ଥିଲା । ରାଜତରଙ୍ଗିଣୀ କାବ୍ୟରେ ତକ୍ଷକ 'ନରପୁର' ଧ୍ୱଂସ କରିଥିବା ବର୍ଣ୍ଣନା ରହିଛି । ଏହି ପୁରାଣମାନଙ୍କ ତଥ୍ୟକୁ ନେଇ କାଶ୍ମୀରରେ ପ୍ରଚଳିତ ଅଛି କେତେକ ପାରମ୍ପରିକ ନାଗପୂଜା ।

**ଇରାମଞ୍ଜରି ପୂଜା**

ପୌରାଣିକ ତଥ୍ୟ ଅନୁଯାୟୀ ଇରା ନାମକ ଜଣେ ଅପ୍‌ସରାଙ୍କୁ କୌଣସି କାରଣରୁ ଇନ୍ଦ୍ର ଅଭିଶାପ ଦେଲେ । ଅପ୍‌ସରା କାଶ୍ମୀର ଉପତ୍ୟକାରେ ଇରା ବୃକ୍ଷ ହୋଇ ଜାତ ହେଲେ । ନୀଳ ନାଗ କହିଛନ୍ତି "ଚୈତ୍ର ମାସରେ ମୋର ପୂଜାରେ, ମୋତେ ଓ ଅନ୍ୟ ନାଗମାନଙ୍କୁ ଇରା ପୁଷ୍ପ ଦେଇ ପୂଜା କଲେ ଆମ୍ଭେ ପ୍ରୀତ ହୋଇଥାଉ" । ଏଣୁ ନିଜର ଓ ଦେଶର ମଙ୍ଗଳ ନିମନ୍ତେ କାଶ୍ମୀରବାସୀ ଏହି ପୂଜା ନିଷ୍ଠାର ସହିତ ପାଳନ କରିଥାଆନ୍ତି । ଏଥିରେ ଇରା ପୁଷ୍ପକୁ ଗୁରୁତ୍ୱ ଦିଆଯାଇଥାଏ ।

**ବରୁଣ ପଞ୍ଚମୀ ପୂଜା**

ଭାରତରେ ସର୍ବତ୍ର 'ନାଗପଞ୍ଚମୀ' ପୂଜାର ପରମ୍ପରା ରହିଥିବାବେଳେ ନୀଳମତ ପୁରାଣରେ ଏହାର ଉଲ୍ଲେଖ ନାହିଁ । ତେବେ, କବି କହ୍ଲଣ ' ବରୁଣ ପଞ୍ଚମୀ

- ନାଗପୂଜା'ର ବର୍ଣ୍ଣନା ଏଥିରେ ଦେଇଛନ୍ତି । ମନେହୁଏ କାଶ୍ମୀରବାସୀ ନାଗମାନଙ୍କୁ ଜଳରେ ବାସକରୁଥିବା ଦେବତା ଭାବରେ ଗ୍ରହଣ କରିଥିବାରୁ ଏମାନଙ୍କୁ ଜଳଦେବତା-ବରୁଣଙ୍କ ସହିତ ସମ୍ପୃକ୍ତ କରାଯାଇଛି । ଏହି ପୂଜା ଜ୍ୟେଷ୍ଠ ମାସରେ ପାଳିତ ହେଉଥିବାବେଳେ ଏହା ଅନେକାଂଶରେ ନାଗପଞ୍ଚମୀ ସହିତ ସମତା ରକ୍ଷା କରେ କିନ୍ତୁ ଏହି ପୂଜା ମୁଖ୍ୟତଃ ବିତସ୍ତା ନଦୀ ଓ ଜଳାଶୟମାନଙ୍କରେ ପାଳିତ ହୋଇଥାଏ ।

ଆକବରଙ୍କ ପ୍ରଧାନମନ୍ତ୍ରୀ ଭାବେ ପରିଚିତ ଆବୁଲ-ଫଜଲ କାଶ୍ମୀରର ନାଗ ବିଶ୍ୱାସ ଓ ପୂଜା ସମ୍ପର୍କରେ ଅନେକ ତଥ୍ୟ ଲିପିବଦ୍ଧ କରିଛନ୍ତି । ତାହା ମଧ୍ୟରେ ଗୋଟିଏ ବିଷୟ ହେଉଛି କୌଣସି ଏକ ଗ୍ରାମ ନିକଟ ଝରଣା ବର୍ଷର ଛଅମାସ ଶୁଷ୍କ ରହିଥାଏ । ଏହା ନିକଟରେ ରହୁଥିବା ପାଞ୍ଚଟି ଗ୍ରାମର ଅଧିବାସୀମାନେ ଝରଣାରେ ନୀଳନାଗଙ୍କ ପୂଜା କରିବା ଦ୍ୱାରା ସେଥିରୁ ପର୍ଯ୍ୟାପ୍ତ ଜଳ ଝରିଥାଏ ଏବଂ ଲୋକେ ଏଥିରେ ଚାଷବାସ କରିଥାଆନ୍ତି । ସେହିପରି 'ଖୋକରନାଗ' ନାମକ ଏକ ଝରଣାର ଜଳକୁ ଲୋକେ ପବିତ୍ର ଓ ମହିମାମୟ ବୋଲି ବିଶ୍ୱାସ କରୁଥିଲେ । ଏହି ଝରଣାର ଜଳରେ ସ୍ନାନ ଓ ପାନ କଲେ ବହୁ ଦୁଃସାଧ୍ୟ ରୋଗ ଆରୋଗ୍ୟ ହୋଇଥାଏ । ଏହିପରି କାଶ୍ମୀର ଉପତ୍ୟକାରେ ବିଭିନ୍ନ ଭାବରେ ନାଗ ସଂସ୍କୃତି ଓ ପୂଜାର ପରମ୍ପରା ରହିଛି ।

## ବିହାରର ନାଗପୂଜା

ବିହାର ପ୍ରଦେଶ ନାଗ ପୂଜାର ଏକ ପ୍ରାଚୀନ ସ୍ଥଳୀ । ଅଶୋକଙ୍କ ସମୟରେ ତାଙ୍କ ରାଜଧାନୀ ପାଟଳୀପୁତ୍ରର ଅନତି ଦୂରରେ ମଣିନାଗଙ୍କ ପୂଜାପୀଠ 'ମଣିମୟ ମଠ' ରହିଥିଲା । ସେହି ମଠ ବର୍ତ୍ତମାନ 'ମଣିଆର ମଠ' ନାମରେ ପରିଚିତ ହୋଇଥିଲାବେଳେ ପରମ୍ପରା କ୍ରମେ ସେଠାରେ ନାଗଦେବତାଙ୍କ ପୂଜା ହୋଇଆସୁଛି । ଏହି ମଠର ଅନେକ ସ୍ଥାନରେ ନାଗ, ନାଗୀ ଦେବତା ମୂର୍ତ୍ତିମାନ ରହିଛି । ଭାରତୀୟ ଉପାସନା ପରମ୍ପରାରେ ବିହାରରେ ନାଗପୂଜା ହେଉଥିଲେ ହେଁ ଏଠାର ପଦ୍ଧତିରେ ଅନେକ ସ୍ୱାତନ୍ତ୍ର୍ୟ ଦେଖାଯାଏ ।



ମଣିଯାର ମଠ, ନାଗଦେବୀ

ଶ୍ରାବଣ ଅମାବାସ୍ୟାରେ ନାରୀମାନେ ଅଟାରେ ନାଗମୂର୍ତ୍ତି ତିଆରି କରି ଏକ ଚିତ୍ରିତ ଟୋକେଇରେ ରଖି ଗ୍ରାମବୁଲି ଭିକ୍ଷା ମାଗନ୍ତି । ଏହା ସହିତ ଘର ବାହାରରେ ଏକ ସ୍ଥାନ ଲିପାପୋଛା କରି ସେଠାରେ ମଧ ନାଗ ଦେବତାଙ୍କ ଚିତ୍ର ଅଙ୍କନ କରନ୍ତି । ପୂର୍ବ ଭିକ୍ଷାଲବ୍ଧ ଚାଉଳ ଓ ପଇସାର ଅର୍ଦ୍ଧଭାଗ ବ୍ରାହ୍ମଣଙ୍କୁ ଦାନ କରି ଅନ୍ୟ ଅର୍ଦ୍ଧେକ ରାନ୍ଧି ସେହି ପୂଜା ସ୍ଥାନରେ ପୂଜା କରି ପ୍ରସାଦ ପାଆନ୍ତି । ଅନ୍ୟ କେତେକ ସ୍ଥାନରେ ଏକ ପାଟସୂତା ବା ବ୍ରତ ପାଇଁ ଉଦ୍ଦିଷ୍ଟ ନାଗମୂର୍ତ୍ତିକୁ ସମର୍ପଣ ପରେ ନାରୀମାନେ ତାହାକୁ ଧାରଣ କରନ୍ତି । ଏହାକୁ 'ପାଟୋରି' କୁହାଯାଏ । ପୂଜାବେଳେ ନାଗ ମୂର୍ତ୍ତିକୁ ଧୂପ, ଦୀପ, ଗନ୍ଧ, ପୁଷ୍ପ ଦେଇ ଦୁଗ୍ଧରେ ଅଭିଷେକ କରାଯାଏ ଏବଂ ପୂଜା ପରେ ମୂର୍ତ୍ତିକୁ ମାଟିତଳେ ପୋତି ଦିଆଯାଏ ।

## ବଙ୍ଗଳାର ମନସା ପୂଜା

ବଙ୍ଗ ପ୍ରଦେଶରେ ନାଗମାତା ମନସାଙ୍କ ପୂଜାର ଲୋକପ୍ରିୟତା ରହିଛି । ନାରୀମାନେ କାର୍ତ୍ତିକ ମାସରେ ନାଗ ପଞ୍ଚମୀ ବ୍ରତ ପାଳନ କରିଥାଆନ୍ତି । ଏହି ବ୍ରତ ନିମନ୍ତେ ବଂଶୀଦାଶ ନାମକ ଜଣେ ବ୍ରାହ୍ମଣ ଅଷ୍ଟାଦଶ ଶତାବ୍ଦୀରେ ଏକ ବ୍ରତକଥା ରଚନା କରିଥିଲେ । ଏହି ରୋଚକ କଥାଟିର ସାରାଂଶ ଏହିକି, ଚାନ୍ଦ ନାମକ ଜଣେ ସୌଦାଗର ମହାନ ଶିବଭକ୍ତ ଥିଲେ । ତାଙ୍କ ନଗରର ଅନ୍ୟମାନେ ନାଗମାତା ମନସାଙ୍କୁ ପୂଜା କରୁଥିବାବେଳେ ସେ ସେଥିପ୍ରତି ଦୃଷ୍ଟି ଦେଉନଥିଲେ । ଥରେ ମନସା ଦେବୀ ସ୍ୱପ୍ନରେ ତାଙ୍କୁ କହିଲେ, " ତୁମେ ମୋର ପୂଜା କର, ଅନ୍ୟଥା ତୁମର ବହୁତ କ୍ଷତି ଘଟିବ" । ଚାନ୍ଦ ସୌଦାଗର ସେଥିପ୍ରତି ମଧ ଦୃଷ୍ଟି ଦେଲେ ନାହିଁ । ଥରେ ସେ ସାତଗୋଟି ବୋଇତରେ ପଣ୍ୟ ସାମଗ୍ରୀ ସହିତ ନିଜ ଛଅ ପୁଅଙ୍କୁ ନେଇ ବଣିଜ କରିବା ପାଇଁ ସମୁଦ୍ର ଯାତ୍ରା କଲେ ।



ନାଗକଳସ, ପଶ୍ଚିମବଙ୍ଗ

ମନସାଙ୍କ କୋପରେ ତାଙ୍କ ସାତୋଟି ବୋଇତ ଝଡଯୋଗୁଁ ସମୁଦ୍ରରେ ବୁଡିଗଲା । ତାଙ୍କ ଛଅ ପୁଅ ମଧ ମୃତ୍ୟୁ ବରଣ କଲେ । ସୌଦାଗର କାଠ ଖଣ୍ଡେ ଧରି ପହଁରି ପହଁରି ଗୋଟିଏ ଦ୍ୱୀପରେ ଲାଗି ନିଜ ପ୍ରାଣରକ୍ଷା କଲେ । କିଛି କାଳପରେ କେତେକ ବଣିକଙ୍କ ସାହାଯ୍ୟରେ ସେ ନିଜ ଦେଶକୁ ଫେରିଲେ ।

ଚାନ୍ଦ ସୌଦାଗର ଗୃହରେ ରହି ବ୍ୟବସାୟ କଲେ । କିଛି କାଳପରେ ତାଙ୍କର ପୁତ୍ର ସନ୍ତାନଟିଏ ହେଲା । ତାହାର ନାମ ଦେଲେ ଲକ୍ଷେନ୍ଦ୍ର । ପିଲାଟି ପାଠସାଠ ପଢି ଯୁବକ ହେଲା । ସୌଦାଗର ତା'ର ବିବାହ କଥା ଚିନ୍ତା କଲେ । ଏତିକିବେଳେ ମନସା ଦେବୀ ପୁଣି ସ୍ୱପ୍ନ ଦେଇ ସୌଦାଗରଙ୍କୁ କହିଲେ " ତୁମେ ମୋତେ ପୂଜା ନକରି ପୁଅର ବିବାହ କରାଇଲେ ତାକୁ ସର୍ପ ଦଂଶନ କରିବ ।" ଚାନ୍ଦ ଏଥିରେ ଭୟଭୀତ ହୋଇ ଲୁହାର ଏକ କୋଠରୀ ତିଆରି କଲେ । ବେହୁଲା ନାମରେ ଏକ ସୁନ୍ଦରୀ କନ୍ୟାକୁ ଲକ୍ଷେନ୍ଦ୍ର ସହିତ ବିବାହ କରାଇଲେ । ମଧୁଶଯ୍ୟା ଦିନ ପୁଅବୋହୂ ସେହି ଲୁହାଘରେ ରହିଲେ । ରାତ୍ରିରେ ବରକନ୍ୟା ଶୋଇଥିବାବେଳେ ଲୁହା ଘରେ ଥିବା ଏକ ଛୋଟ ଛିଦ୍ର ଦେଇ ଏକ ସର୍ପ ଘରେ ପ୍ରବେଶ କଲା ଓ ଶୋଇଥିବା ଲକ୍ଷେନ୍ଦ୍ରକୁ ଦଂଶନ କଲା । ସ୍ୱାମୀଙ୍କ ମୃତ୍ୟୁରେ ବେହୁଲା ବହୁତ କାନ୍ଦିଲେ, ତେବେ, ମନରେ ଧୈର୍ଯ୍ୟ ଧରି ସ୍ୱାମୀଙ୍କୁ କିପରି ବଞ୍ଚାଇବେ ତାର ଉପାୟ ଚିନ୍ତା କଲେ ।

ଏଥିନିମନ୍ତେ ବେହୁଲା କାଠାରେ ଏକ ଭେଳା ତିଆରି କଲେ । ସେ ସ୍ୱାମୀଙ୍କୁ ଶବ ଧରି ଭେଳାରେ ବସି ସମୁଦ୍ର ଯାତ୍ରା କଲେ । ଭେଳାଟି ବହୁଦିନ ସମୁଦ୍ରରେ ଭାସିବା ପରେ ସ୍ୱର୍ଗରେ ଲାଗିଲା । ବେହୁଲା ସେଠାରେ ଦେବତାମାନଙ୍କୁ ନିଜ ଦୁଃଖ ଜଣାଇଲେ ଏବଂ ନୃତ୍ୟ ଗୀତ ଦ୍ୱାରା ସେମାନଙ୍କୁ ଖୁସି କରାଇଲେ । ଦେବତାମାନେ ସନ୍ତୁଷ୍ଟ ହୋଇ ତାଙ୍କ ସ୍ୱାମୀଙ୍କୁ ଜୀବନଦାନ ଦେଲେ ଏବଂ ପୂର୍ବେ ମରିଥିବା ଚାନ୍ଦ ସୌଦାଗରଙ୍କ ଛଅପୁଅଙ୍କୁ ମଧ ଫେରାଇଦେଲେ । 'ସତୀ ବେହୁଲା' ନିଜ ସ୍ୱାମୀ ଓ ଛଅ ଦେଢ଼ଶୁରଙ୍କୁ ନେଇ ମର୍ତ୍ତ୍ୟକୁ ଫେରିଲେ । ଶାଶୂ, ଶ୍ୱଶୁର ଓ ଗ୍ରାମବାସୀମାନେ ଏହା ଦେଖି ଅତି ଆନନ୍ଦିତ ହେଲେ । ସେହି ଦିନଠାରୁ ବେହୁଲା ମନସା ଦେବୀଙ୍କ ପୂଜା କରି ସୁଖ ଶାନ୍ତିରେ ସଂସାର କଲେ । ଏହି ଲୋକପ୍ରିୟ ବ୍ରତ କଥାଟି 'ସତୀ ବେହୁଲା' ନାମରେ ଚଳଚିତ୍ରରେ ରୂପାନ୍ତରିତ ହୋଇଛି ।

## ଓଡିଶାରେ ନାଗପୂଜା

ପୂର୍ବେ ଓଡିଶାରେ ନାଗପୂଜାର ବଳିଷ୍ଠ ପରମ୍ପରା ଥିଲା । ତେବେ ବୈଦିକ, ଦେବତାମାନଙ୍କ ପୂଜାର ପ୍ରଚାର ପ୍ରସାର ଫଳରେ ଏହି ପୂଜାର ଲୋକପ୍ରିୟତା ଯଥେଷ୍ଟ ହ୍ରାସ ପାଇଛି । ସର୍ବଭାରତୀୟ ପରମ୍ପରା ଅନୁସାରେ ଓଡିଶାର ଅନେକ ଲୋକ ଶ୍ରାବଣ ମାସରେ ମନସା ପଞ୍ଚମୀ ଓ କାର୍ତ୍ତିକ ମାସରେ ନାଗଲ ଚତୁର୍ଥୀ ବ୍ରତ ପାଳନ କରିଥଆନ୍ତି । ଏଥି ନିମନ୍ତେ ଦୁଇଟି ବ୍ରତ କଥା ରହିଛି । ଏଥିରୁ ଗୋଟିଏ ବ୍ରତ କଥାର ସାରାଂଶ ଏହିକି , ଧନପତି ସାଧବଙ୍କର ସାତ ପୁଅ, ସାତ ବୋହୂ । ତେବେ, ଶାଶୁ ସାନବୋହୂକୁ ଭଲ ପାଏନାହିଁ । ତାକୁ ବହୁତ ଗଞ୍ଜଣା ଦିଏ । ଦିନେ ଶାଶୁ ପୋଖରୀକୁ ଗାଧୋଇ ଯାଇ ସାତୋଟି ଗଡିଶା ମାଛ ଆଣିଲା ଓ ସାନ ବୋହୂକୁ କହିଲା ତାକୁ ଭାଜି କରି ଦେଲେ ସେ ଖାଇବ । ସାନବୋହୂ ମାଛ ପୁଟୁଳାଟିକୁ ଚାଳରେ ଖୁଞ୍ଚିଦେଲା । କ'ଣହେଲା କେଜାଣି, ଶାଶୁ ବୋହୂ ମାଛ କଥା ଭୁଲିଗଲେ । କିଛି ଦିନପରେ ବୋହୂର ମନେ ପଡିବାରୁ ସେ ପୁଟୁଳିକୁ କାଢି ଦେଖିଲା । ଚାହୁଁ ଚାହୁଁ ସେଥିରୁ ସାତୋଟି ସାପଛୁଆ ବାହାରି ତଗ ତଗ ହୋଇ ଘରର ଐଶାନ୍ୟ କୋଣକୁ ଚାଲିଗଲେ । ତେବେ, ବେଳେ ବେଳେ ସେ ସେହି କୋଣକୁ ଯାଇ ସାପ ଛୁଆଙ୍କୁ କ୍ଷୀର ଓ ଅନ୍ୟ ପଦାର୍ଥ ଦିଏ । ଦିନେ ସାନବୋହୂ ସାତୋଟି ସାପ ଛୁଆଙ୍କୁ ନେଇ ଗୋଟିଏ ବିଳ ମୁହଁରେ ଛାଡିଦେଲା । ସାପମାନେ ବିଳ ଦେଇ ନିଜ ଘର ପାତାଳକୁ ଚାଲିଗଲେ । ସାପ ପିଲାମାନେ ତାଙ୍କ ନାଗମାତାଙ୍କୁ ସାନବୋହୂ ସେମାନଙ୍କୁ କିପରି ଯତ୍ନରେ ପାଳିଥିଲା, ସେ କଥା କହିଲେ । ନାଗମାତା ଖୁସି ହୋଇ କହିଲେ ତୁମେ ସାନବୋହୂକୁ କିଛି ଦିନପାଇଁ ଆମ ଘରକୁ ଡାକି ଆଣ । ସାପ ଛୁଆମାନେ ମଣିଷ ରୂପରେ ସାଧବ ଘରକୁ ଗଲେ, ସାଧବାଣୀକୁ କହିଲେ, " ଆମେ ତମ ସାନବୋହୂର ଭାଇମାନେ, ଆମେ ତାକୁ ଆମ ଘରକୁ କିଛି ଦିନପାଇଁ ନେବୁ ।" ସାଧବାଣୀ ସାନବୋହୂକୁ ତାଙ୍କ ସାଙ୍ଗରେ ପଠାଇଲା । ସର୍ପପୁରରେ



ନାଗଦେବତା, ପାଇକପଡା, ରାୟଗଡ଼ା

ସାନବୋହୂ କିଛିଦିନ ରହିଲା । ନାଗମାତା, ବୁଢ଼ାସାପ ଓ ଅନ୍ୟମାନେ ତାକୁ ଆଦର ଗୌରବ କଲେ । ସାନବୋହୂ ନିଜ ଘରକୁ ଫେରି ନାଗଲ ଚଉଠୀ ବ୍ରତ କଲା । ଶାଶୁକୁ ଏସବୁ କଥା କହିଲା, ଶାଶୁ ସେହିଦିନଠାରୁ ସାନବୋହୂକୁ ମଧ ଆଦର କଲା ।

ଗଞ୍ଜାମ ଜିଲ୍ଲାରେ ପ୍ରଚଳିତ ଅନ୍ୟ ଏକ ନାଗଲ ଚଉଠି ବ୍ରତକଥା ଅନୁଯାୟୀ, 'ସାଧବ ଭାର୍ଯ୍ୟା' ନାଗମାତା ତୁଳେ ସଙ୍ଗାତ ବସିଥିଲେ । ଥରେ ନାଗମାତା ବୋଇଲେ, "ସଙ୍ଗାତ, ପୁରୁଷୋତ୍ତମ ଯିବି ଗୁଣ୍ଡିଚା ଯାତକୁ, ମୋର ଡିମ୍ବ ସାତୋଟି ଠାବ କରି ରଖିଥିବ ।" ନାଗାମାତା ଯାତ୍ରା ଦେଖି ଫେରିଲେ । କିନ୍ତୁ ଦେଖିଲେ ତାଙ୍କ ଡିମ୍ବତକ କାଣ୍ଡିଆ ହୋଇଯାଇଛି । ସେ କୋପ କଲେ, ଘରକୁ ଯାଇ ଡିମ୍ବ ଫଟାଇ ଦେବାରୁ ଗୋଟିଏ ଡିମ୍ବରୁ ଖଣ୍ଡିଆ ନାଗୁଣୀଟିଏ ବାହାରିଲା । ନାଗମାତା ତାକୁ ଯତ୍ନରେ ପାଳି ବଡ କଲେ ।

ଏହାପରର ବିଷୟ ଏହିକି, ସାଧବାଣୀର ସାତପୁଅ । ସେ ଯେତେବେଳ ପୁଅମାନଙ୍କ ବିବାହ କରେ ମଧୁଶଯ୍ୟା ରାତିରେ ହିଁ ନାଗମାତା ଖଣ୍ଡିଆ ନାଗୁଣୀଙ୍କୁ ପଠାଇ ପୁଅମାନଙ୍କୁ ଦଂଶନ କରି ମାରିଦିଏ । ଏପରି ସାଧବାଣୀର ଛଅପୁଅ ମରିଗଲେ । ଶେଷରେ ସାନପୁଅ ରଜାଙ୍କ ଝିଅକୁ ବାହା ହେଲା । ରାଜଝିଅ ଘରକୁ ଆସି ଶାଶୁଠାରୁ ପୂର୍ବକଥା ଶୁଣିଲା । ରାଜା ଝିଅ ବଡ ଚତୁରୀ । ମଧୁଶଯ୍ୟା ଦିନ ଗୋଟିଏ କୋଠରୀରେ ଖୀରସର କଦଳୀ ଚକଟି ରଖିଲା ଓ ଗୋଟେ ରୂପା ଫରୁଆ ଧରି ବସିଲା । ପୂର୍ବପରି ଖଣ୍ଡିଆ ନାଗୁଣୀ ଆସି ତା ସ୍ୱାମୀଙ୍କୁ ଦଂଶନ କଲା ସତ, କିନ୍ତୁ ରଜା ଝିଅ ତାକୁ ଫରୁଆରେ ବନ୍ଦ କରିଦେଲା । ନାଗମାତା ଏକଥା ଜାଣି ରଜା ଝିଅ ପାଖକୁ ଆସିଲେ ଓ ଖଣ୍ଡିଆ ନାଗୁଣୀକୁ ଛାଡି ଦେବାକୁ କହିଲା । ରଜା ଝିଅ ନାଗମାତାଙ୍କୁ ଗୌରବ ଆଦର କରି ଦୁଧସର କଦଳୀ ଚକଟା ଖାଇବାକୁ ଦେଲା, ତାଙ୍କୁ ପୂଜା କରି କୌଶଳରେ ନିଜ ସ୍ୱାମୀଙ୍କ ଜୀବନ ସହିତ ପୂର୍ବେ ମରିଯାଇଥିବା ଛଅ ଦେଢଶୁରଙ୍କୁ ମଧ ଫେରାଇ ଆଣିଲା । ନାଗମାତା ଖଣ୍ଡିଆ ନାଗୁଣୀଙ୍କୁ ପାଇଲେ ଓ ସମସ୍ତେ ନିଷ୍ଠାର ସହିତ ନାଗଲ ଚଉଠି ବ୍ରତ କଲେ, ସେମାନଙ୍କର ମଙ୍ଗଳ ହେବବୋଲି କହି ପାତାଳକୁ ଗଲେ ।

## ଆଞ୍ଚଳିକ ନାଗପୂଜା

ଭାରତର କେତେକ ସ୍ଥାନରେ ଆଞ୍ଚଳିକ ଭିତ୍ତିରେ ନାଗପୂଜା ପାଳନ କରାଯାଏ । ଏଥିମଧ୍ୟରୁ କେତେକ ଲୋକାଚାର ହୋଇଥିବାବେଳେ ଅନ୍ୟ କେତେକରେ ଆଂଶିକ ଭାବେ ପୌରାଣିକ ଆଖ୍ୟାନ ଦେଖିବାକୁ ମିଳେ । ଓଡିଶାରେ ପ୍ରଚଳିତ ଏହି ପ୍ରକାର ଦୁଇଟି ପୂଜାର ସୂଚନା ଏଠାରେ ଦିଆଗଲା ।

ପୁରୀ, କଟକ ଜିଲ୍ଲା ଉପକୂଳ ଅଞ୍ଚଳରେ ପ୍ରବାହିତ ହେଉଥିବା ପ୍ରାଚୀ ନଦୀ ଅବବାହିକା କଣ୍ଟାପଡା, ମରିଚିପୁର ଓ ଟୋଲା ଅଞ୍ଚଳରେ ଶ୍ରାବଣ ମାସରେ ନାଗପଞ୍ଚମୀକୁ ଜାଗୁଳାଇ ପଞ୍ଚମୀ ଭାବେ ପାଳନ କରାଯାଏ । ଏଥିରେ ଜାଗୁଳାଇ ଠାକୁରାଣୀଙ୍କୁ ପୂଜା କରାଯିବା ପରେ ନାଗଦେବତାଙ୍କ ମହତ୍ତ୍ୱ ଉପରେ ଆଧାରିକ କଥାବସ୍ତୁକୁ ନେଇ ରାତ୍ରରେ ଏକ ଅପେରା ବା ନାଟକ ମଞ୍ଚସ୍ଥ କରାଯାଏ । ସମ୍ବଲପୁର ଜିଲ୍ଲାର ଲେଡିନ୍ ଅଞ୍ଚଳରେ ନାପିତୁଣୀମାନେ ତିନି ଆଖି ଥିବା ମାଟିର ଏକ ନାଗ ପିତୁଳା ତିଆରି କରି, ତାହାକୁ ଧରି ଘର ଘର ବୁଲି ଭିକ୍ଷା ମାଗନ୍ତି । ଏହି ଭିକ୍ଷା ଚାଉଳ ରନ୍ଧନ କରି ତାହାକୁ ଜାଗୁଳାଇ ଠାକୁରାଣୀଙ୍କୁ ପୂଜା କରନ୍ତି । ପଶ୍ଚିମ ଓଡିଶାର ବରପାଲୀ ଓ କୁମ୍ଭାରୀ ଅଞ୍ଚଳରେ ଭାଦ୍ରବ ଶୁକ୍ଳ ଏକାଦଶୀ ଦିନ 'ଚଢ଼େଇ ଓଷା' ପାଳନ କରାଯାଏ । ଏହି ଦିନ ବ୍ରତାଚାରୀମାନେ ଉପବାସ ରହି ଲିପାପୋଛା ହୋଇଥିବା ଏକ ସ୍ଥାନରେ ବାଲିର ଏକ ହ୍ରଦ ବା ପୋଖରୀର ପ୍ରତୀକ ତିଆରି କରି ସେଥିରେ କାଳୀୟ ନାଗ ଓ ଏକ ଚଢ଼େଇର ଚିତ୍ର ବଟା ପିଠଉରେ ଅଙ୍କନ କରନ୍ତି । ଏଥିରେ ଫୁଲ, ଧୂପଦୀପ ଇତ୍ୟାଦି ଦେଇ ରାତ୍ରୀର ପ୍ରତ୍ୟେକ ପ୍ରହରରେ ପୂଜା କରାଯାଏ, ଅର୍ଥାତ୍, ଚାରିଥର ପୂଜା ହୋଇଥାଏ । ଏଠାରେ ଗରୁଡଙ୍କ ପ୍ରତୀକ ପକ୍ଷୀ ଓ କାଳୀୟ ନାଗ ଉଭୟଙ୍କୁ ପୂଜା କରାଯାଇଥାଏ ।

ଭାରତର ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଭାବରେ ନାଗପୂଜା ପାଳିତ ହୋଇଥାଏ । ଏହି ସମସ୍ତ ବିବରଣୀ ଉଲ୍ଲେଖ କଲେ ଏକ ଦୀର୍ଘ ନିବନ୍ଧ ହେବ । ତେବେ, ଏଠାରେ ଅନ୍ୟ କେତୋଟି ରାଜ୍ୟର ଏହି ପରମ୍ପରାର ସଂକ୍ଷିପ୍ତ ସୂଚନା ଦିଆଗଲା । ମହାରାଷ୍ଟ୍ରର ସିରଲା ଗ୍ରାମରେ ନାଗ ପଞ୍ଚମୀ ମହାଆଡମ୍ବରରେ ପାଳିତ ହୋଇଥାଏ । ଦଶଦିନ ପୂର୍ବରୁ ଜୀବନ୍ତ ନାଗମାନଙ୍କୁ ଧରି ସେମାନଙ୍କୁ ମାଟି କଳସ ମଧରେ ରଖାଯାଏ । ପୂଜାଦିନ ପ୍ରତ୍ୟୁଷରେ ପାତ୍ରଗୁଡିକୁ ପଟୁଆରରେ ଆମ୍ବାବାଇ ମନ୍ଦିରକୁ ନିଆଯାଏ ଏବଂ ମନ୍ଦିର ଆଗରେ ଏହି ସର୍ପମାନଙ୍କୁ ଛାଡି ପୂଜା କରାଯାଏ । ଭକ୍ତମାନେ ସର୍ପର ଲାଞ୍ଜକୁ ଧରି ଦେବୀଙ୍କ ଆଗରେ ଦେଖାଇ ଥାଆନ୍ତି । ଏହାପରେ ସର୍ପମାନଙ୍କୁ ଦୁଗ୍ଧ ଓ ମହୁ ଦିଆଯାଏ । ନୀତି ଅନୁସାରେ ପୂଜା ସରିବା ପରେ ପୁନଶ୍ଚ ସର୍ପମାନଙ୍କୁ କଳସରେ ରଖି ସୁସଜ୍ଜିତ ବଳଦଗାଡି ଉପରେ ଶୋଭାଯାତ୍ରାରେ ନିଆଯାଏ । ଏହି ସମୟରେ ଲୋକେ କଳସ ଉପରକୁ ଭଜା ଚାଉଳ, ଖଇ ଓ ଫୁଲ ଫିଙ୍ଗିଥାଆନ୍ତି । ଯାତ୍ରାପରେ ସର୍ପମାନଙ୍କୁ ପୁନଶ୍ଚ ତାଙ୍କ ସ୍ଥାନରେ ଛାଡିଦିଆଯାଏ ।

ଉତ୍ତର ପ୍ରଦେଶରେ ଅବିବାହିତ ଝିଅମାନେ ମନୁଷ୍ୟାକୃତିର ସର୍ପ ମୂର୍ତ୍ତିମାନ ନଡା ଓ ମାଟିରେ ତିଆରି କରି ପୂଜା କରନ୍ତି । ପୂଜା ପରେ ଜଳରେ ବିସର୍ଜନ

କରାଯାଇଥିବା ଏହି ମୂର୍ତ୍ତିଗୁଡିକୁ ପୁଅମାନେ ବାଡେଇ ଭାଙ୍ଗିଥାଆନ୍ତି । ମଧ୍ୟପ୍ରଦେଶର କେତେକ ଅଞ୍ଚଳରେ ଗ୍ରାମ ଉପକଣ୍ଠ ସର୍ପବିଳ ନିକଟରେ ସର୍ପଦେବାତଙ୍କ ମୂର୍ତ୍ତି ଆଙ୍କି ପୂଜା କରାଯାଏ । ଏହି ପ୍ରଦେଶର ଗଣ୍ଡ ଆଦିବାସୀମାନେ ବର୍ଷାଦିନ ଆରମ୍ଭରେ ସର୍ପକୁ ମାରି ତାର ମୁଣ୍ଡ ଓ ଲାଞ୍ଜକୁ ନାଗଦେବତାଙ୍କୁ ସମର୍ପଣ କରନ୍ତି ଏବଂ ଗଣ୍ଡି ଭାଗଟି ରାନ୍ଧି ଖାଆନ୍ତି । ସେମାନଙ୍କର ବିଶ୍ୱାସ ଯେ, ଏହାଦ୍ୱାରା ବଣଜଙ୍ଗଲରେ ମିଳୁଥିବା ଖାଦ୍ୟରେ ଯଦି ବିଷାକ୍ତ ଅଂଶ ଥାଏ, ତେବେ ତାହା ସେମାନଙ୍କର କୌଣସି କ୍ଷତି କରିବ ନାହିଁ । ପଞ୍ଜାବରେ ଘରେ ଘରେ କାନ୍ଥରେ କଳା ରଙ୍ଗରେ ସର୍ପର ଚିତ୍ର ଅଙ୍କାଯାଇ ପୂଜା କରାଯାଏ । ଏହି ଚିତ୍ର କାନ୍ଥରେ ଥିଲେ ଘରେ ସର୍ପ ପ୍ରବେଶ କରେ ନାହିଁ ବୋଲି ବିଶ୍ୱାସ କରାଯାଏ । ଆସାମର ସର୍ପଦେବତାଙ୍କ ନାମ 'ଯଥେଲେନ' । ଏହା ଏକ ବିରାଟ ସର୍ପ ବୋଲି ବିଶ୍ୱାସ କରାଯାଏ । କେତେକ ସ୍ଥଳେ ଏହାର ମୂର୍ତ୍ତି ଓ ଅନ୍ୟ କେତେକ ସ୍ଥଳେ ଚିତ୍ର କରାଯାଇ ପୂଜା କରାଯାଏ । ପୂର୍ବେ ଏହି ପୂଜାବେଳେ ଆଦିବାସୀମାନେ ନରବଳୀ ଦେଉଥିଲେ ବୋଲି ଶୁଣିବାକୁ ମିଳେ ।

## ଦକ୍ଷିଣ ଭାରତୀୟ ନାଗପୂଜା ପରମ୍ପରା

ଦକ୍ଷିଣ ଭାରତୀୟ ପ୍ରଦେଶ ତାମିଲନାଡୁ, କେରଳ, କର୍ଣ୍ଣାଟକ ଓ ଆନ୍ଧ୍ରରେ ସର୍ପ ବା ନାଗପୂଜାର ବଳିଷ୍ଠ ପରମ୍ପରା ରହିଛି । ଅଧିକାଂଶ ଗ୍ରାମର ପୋଖରୀକୂଳ, ଅଶ୍ୱତ୍ଥ ବୃକ୍ଷ ମୂଳେ କିମ୍ବା ଶିବ ମନ୍ଦିର ପରିସରରେ ନାଗ ମୂର୍ତ୍ତି ସ୍ଥାପନ କରାଯାଇଥାଏ । ଦୈନନ୍ଦିନ ନିତ୍ୟକର୍ମର ଏକ ଅଙ୍ଗ ଭାବେ ଲୋକେ ସ୍ନାନସାରି ନାଗଦେବତାଙ୍କୁ ଗନ୍ଧ ପୁଷ୍ପ ଦେଇ ପୂଜା କରନ୍ତି । କେରଳ ଓ ତାମିଲନାଡୁର ଗ୍ରାମରେ ଲୋକେ ନିଜ ଗୃହ ବାହାରେ ନାଗଦେବତାଙ୍କ ପ୍ରତିମା କିମ୍ବା ପ୍ରତୀକ ସ୍ଥାପନା କରିଥାଆନ୍ତି । ସନ୍ତାନବିହୀନା ନାରୀମାନେ ମାନସିକ ରଖି ସନ୍ତାନ ପ୍ରାପ୍ତି ନିମନ୍ତେ ଦୀର୍ଘ ଦିନ ଧରି ନିଷ୍ଠାର ସହିତ ନାଗନାଗୀ ପୂଜା କରନ୍ତି । ଏହା ବ୍ୟତୀତ ବର୍ଷର କେତେକ ତିଥିରେ ସ୍ୱତନ୍ତ୍ର ନାଗପୂଜା ପାଳନ କରାଯାଉଥିବାବେଳେ ନାଗଦେବତାଙ୍କ ପୀଠ ବା ମନ୍ଦିର ଥିବା କେତେକ ସ୍ଥାନରେ ବାର୍ଷିକ ପର୍ବ ମହାସମାରୋହରେ ସମାହିତ ହୋଇଥାଏ । ସନ୍ତାନପ୍ରାପ୍ତି ବ୍ୟତୀତ ଉତ୍ତମ ବୃଷ୍ଟି, ଶସ୍ୟ ଉତ୍ପାଦନ ତଥା ରୋଗବ୍ୟାଧିରୁ ମୁକ୍ତି ପାଇବା ନିମନ୍ତେ ମଧ୍ୟ ନାଗ ପୂଜା କରାଯାଏ । ବହୁ ପ୍ରାଚୀନ କାଳରୁ ନାଗପୂଜାର ପରମ୍ପରା ପ୍ରଚଳିତଥିବା ମନ୍ଦିରମାନ ଦେଖିବାକୁ ମିଳେ । ଏହିପରି କେତୋଟି ପ୍ରଖ୍ୟାତ ମନ୍ଦିରର ସୂଚନା ନିମ୍ନରେ ପ୍ରଦତ୍ତ ହେଲା ।



ଏକ ସ୍ଥାନୀୟ ଆଖ୍ୟାନ ଅନୁଯାୟୀ ତାମିଲନାଡୁର କନ୍ୟାକୁମାରୀ ଜିଲ୍ଲାର ଜଣେ ଚାଷୀ କାର୍ଯ୍ୟ କରୁଥିବାବେଳେ ଗୋଟିଏ ପଥରରେ ତାଙ୍କ ଫାଉଡାଟି ବାଜି ସେଥିରୁ ରକ୍ତ ବୋହିଲା । ଚାଷୀ ଜଣକ ଏଥିରେ ଆତଙ୍କିତ ହୋଇ ଗ୍ରାମରେ ଥିବା ଜଣେ ନାଗପୂଜକ ନମ୍ବୁଦ୍ରୀ ବ୍ରାହ୍ମଣଙ୍କୁ ସେହି ସ୍ଥାନକୁ ଡାକି ଆଣିଲେ । ବ୍ରାହ୍ମଣ ଜଣକ ମାଟି ଆଡେଇ ତା, ମଧ୍ୟରୁ ଏକ ସୁନ୍ଦର ନାଗମୂର୍ତ୍ତି ଉଦ୍ଧାର କଲେ । ଏହାପରେ ଗ୍ରାମବାସୀଙ୍କ ସହଯୋଗରେ ସେଠାରେ ଏକ ଛପର ଘର ବା ନାଗ ମନ୍ଦିର କରାଯାଇ ମୂର୍ତ୍ତିଟିକୁ ପୂଜାର୍ଚ୍ଚନା କରାଗଲା । ସେହିଦିନଠାରୁ ସେହି ସ୍ଥାନ 'ନାଗ ମନ୍ଦିର' ବା 'ନାଗର କୋଭିଲ' ନାମରେ ପରିଚିତ ହେଲା । ନାଗଦେବତାଙ୍କ ମହିମା ପ୍ରଚାର ହେବାଦ୍ୱାରା ସେଠାକୁ ବହୁ ଜନସମାଗମ ହେଲା । ଧୀରେ ଧୀରେ ସେହି ସ୍ଥାନ ନାଗପୂଜାର ଏକ ପ୍ରମୁଖ କେନ୍ଦ୍ର ଭାବେ ପରିଚିତ ହେବା ସଙ୍ଗେ ସଙ୍ଗେ ସହରଟି 'ନଗରକେଭିଲ' ନାମରେ ପ୍ରସିଦ୍ଧ ଲାଭକଲା । ତାମିଲନାଡୁର ଏହା ଏକ ପ୍ରସିଦ୍ଧ ନାଗପୀଠ ହୋଇଥିବାବେଳେ ରାଜ୍ୟର ଅନେକ ସ୍ଥାନରେ ନାଗ ଓ ନାଗୀ ମନ୍ଦିର ଓ ପୀଠମାନ ରହିଛି ।

ନାଗଫଳକ, ଦକ୍ଷିଣ ଭାରତ

## କେରଳରେ ନାଗପୂଜା ପରମ୍ପରା

କେରଳର ପୁରାଣ କଥା ଅନୁଯାୟୀ ପର୍ଶୁରାମଙ୍କ ନିବାସ ବା ଆଶ୍ରମ କେରଳରେ ଥିଲା । ଏକଦା ପରଶୁରାମ ଅନ୍ୟ ଅଞ୍ଚଳରୁ କେତେକ ବ୍ରାହ୍ମଣଙ୍କୁ ଅଣାଇ ଆଶ୍ରମରେ ରଖିବା ପାଇଁ ଇଚ୍ଛା କଲେ । କିନ୍ତୁ କେରଳର ଜଳ କ୍ଷାରଯୁକ୍ତ ହୋଇଥିବାରୁ ବ୍ରାହ୍ମଣମାନେ ସେଠାକୁ ଆସିଲେ ନାହିଁ । ଏଥିରେ ଦୁଃଖ ପ୍ରକାଶ କରି ପର୍ଶୁରାମ ହିମାଳୟ ଯାତ୍ରା କଲେ । ସେ ସେଠାରେ ତପସ୍ୟା ଓ ପୂଜାର୍ଚ୍ଚନା କରି ଶିବଙ୍କୁ ସନ୍ତୁଷ୍ଟ କଲେ ଏବଂ କେରଳର ଜଳରାଶିକୁ ମଧୁର କରିବା ପାଇଁ ତାଙ୍କୁ ଅନୁରୋଧ କଲେ । ଶିବ ପର୍ଶୁରାମଙ୍କୁ କହିଲେ ତୁମ ରାଜ୍ୟରେ ନାଗରାଜ ଅନନ୍ତ ଅଛନ୍ତି । ତୁମେ ତାଙ୍କୁ ସନ୍ତୁଷ୍ଟ କରିପାରିଲେ କେରଳର ଜଳ ମଧୁର ହୋଇଯିବ । ପର୍ଶୁରାମ କେରଳ ଆସି ପୁନଶ୍ଚ ଜପ ଓ ପୂଜାର୍ଚ୍ଚନା କରି ନାଗରାଜ ଅନନ୍ତଙ୍କୁ ପ୍ରୀତ କଲେ । ଏହାଦ୍ୱାରା ସେଠାର ଜଳରାଶି ମଧୁର ହେଲା ଓ ବ୍ରାହ୍ମଣମାନେ ଆସି ସେଠାରେ ବସବାସ କଲେ ।

 କେରଳରେ ନାଗରାଜ ଅନନ୍ତଙ୍କ ସେହି ସ୍ଥାନ 'ତିରୁଅନନ୍ତପୁରମ' ଅର୍ଥାତ୍ 'ଶ୍ରୀଅନନ୍ତପୁର' ନାମରେ ପରିଚିତ ହୋଇଛି। ଏହି ସ୍ଥାନ କେରଳର ରାଜଧାନୀ ଅଟେ, ଯେଉଁଠାରେ ନାଗପୂଜାର ବଳିଷ୍ଠ ପରମ୍ପରା ରହିଛି। ରାଜ୍ୟର ବିଭିନ୍ନ ସ୍ଥାନରେ ଛୋଟବଡ ନାଗଦେବତା ମନ୍ଦିରମାନ ଥିବାବେଳେ ଆଲ୍ଲାପାଇ ଜିଲ୍ଲାର ' 'ମାନ୍ନରଶାଳା' ଓ ତ୍ରିଚୁର ଜିଲ୍ଲାର ' ପାମ୍ପୁମେକ୍କାଟୁମାଳା' ନାଗନାଗୀ ବା ନାଗ ଓ ନାଗପକ୍ଷୀ ମନ୍ଦିର ମହିମାମୟ ଅଟେ।

କେରଳର ମାନ୍ନରଶାଳା ନାଗଦେବତା ମନ୍ଦିର ଆଲ୍ଲାପାଇ ଜିଲ୍ଲାର ହରିପଦ ନାମକ ସ୍ଥାନରେ ଥିବା ସୁବ୍ରମନ୍ୟମ୍ ସ୍ୱାମୀ ମନ୍ଦିର ନିକଟରେ ଅବସ୍ଥିତ। ପୁରାଣ ତଥ୍ୟ ଅନୁଯାୟୀ ଏହି ସ୍ଥାନ ଅର୍ଜୁନ ଦହନ କରିଥିବା ଖାଣ୍ଡବ ବନ ଅଞ୍ଚଳ ଅଟେ। ଅର୍ଜୁନଙ୍କ ଏହି ବନ ଦହନବେଳେ ବନାଗ୍ନିରେ ସର୍ପମାନେ ପ୍ରାଣତ୍ୟାଗ କରୁଥିଲେ। ଜଣେ ନାରୀ ଚେଷ୍ଟା କରି ବହୁ ସର୍ପଙ୍କ ପ୍ରାଣରକ୍ଷା କଲେ। ସେହିଦିନରୁ ଏହି ସ୍ଥାନ ସର୍ପ ପୂଜାର ଏକ କେନ୍ଦ୍ର ଥିଲା। ପରବର୍ତ୍ତୀ ସମୟରେ ଏକ ଦମ୍ପତି ସନ୍ତାନ ପ୍ରାପ୍ତି ନିମନ୍ତେ ସେଠାରେ ପୂଜାର୍ଚ୍ଚନା କରି ଯାଆଁଳା ସନ୍ତାନ ପାଇଥିଲେ। ସେହି ଦୁଇ ସନ୍ତାନଙ୍କ ମଧ୍ୟରୁ ଗୋଟିଏ ଥିଲା 'ନାଗବାଚ୍ଛା'। ସେ ଜନ୍ମ ହେବାକ୍ଷଣି ମାତାଙ୍କୁ ଅନୁରୋଧ କରି କହିଲା, "ଏଠାରେ ମୋତେ ତୁମେ ଓ ତୁମପରେ କେବଳ ବ୍ରହ୍ମଚାରିଣୀ ନାରୀମାନେ ପୂଜା କରିବେ। ଏହାଦ୍ୱାରା ସଂସାରର ମଙ୍ଗଳ ହେବ।" ସେ ସମୟରେ ସେଠାରେ ଚାଳ ଛପରର ଏକ କୁଟୀର କରି ନାଗଦେବତାଙ୍କ ପୂଜା କରାଯାଉଥିଲା। ପରବର୍ତ୍ତୀ ପର୍ଯ୍ୟାୟରେ ଏଠାରେ ମନ୍ଦିର ହୋଇଛି ଓ ନମ୍ବୁଦ୍ରୀ-ବ୍ରାହ୍ମଣ ପରିବାରର ପ୍ରୌଢା କିମ୍ବା ବୃଦ୍ଧା ନାରୀମାନେ ମନ୍ଦିରର ପୂଜାରିଣୀ ଭାବେ ଦାୟିତ୍ୱ ନେଇ ନିଷ୍ଠାର ସହ ପୂଜାର୍ଚ୍ଚନା କରୁଅଛନ୍ତି। ଭାଦ୍ରବ ଓ ଆଶ୍ୱିନ ମାସରେ ପାଳିତ ହେଉଥିବା ଏଠାର ଯାତ୍ରାରେ ବହୁ ଜନସମାଗମ ହୁଏ। ଲୋକେ ମାନସିକ ରଖି ପୂଜାର୍ଚ୍ଚନା କରିଥାଆନ୍ତି।

## କର୍ଣ୍ଣାଟକରେ ନାଗପୂଜା

କର୍ଣ୍ଣାଟକ ମଧ ନାଗପୂଜାର ଏକ ପ୍ରମୁଖ ସ୍ଥଳୀ ଅଟେ। ଏଠାରେ ନାଗଦେବତା ମୁଖ୍ୟତଃ 'ସୁବ୍ରମନ୍ୟ' ବା 'ସୁବ୍ରମନ୍ୟସ୍ୱାମୀ' ନାମରେ ପରିଚିତ। ଏହା ବ୍ୟତୀତ ଏଠାର ନାଗ ଦେବତାଙ୍କୁ ଅନ୍ୟ କେତେକ ନାମ ହେଉଛି ଶୁକି ସୁବ୍ରମନ୍ୟ, କୁଙ୍ଗୀ କୁକି ,ମଞ୍ଜେଶ୍ୱର କଣ୍ଡେରା, ବିଟୁପାଡି ଇତ୍ୟାଦି। ଦକ୍ଷିଣ କର୍ଣ୍ଣାଟକରେ ଉଡିପି ଜିଲ୍ଲାରେ ଥିବା ଆରବି ଗ୍ରାମ ନାଗପୂଜାର ଏକ ପ୍ରମୁଖ କେନ୍ଦ୍ର। ଏଠାକାର ପୂଜକମାନେ ଡାକ୍ଟି କିମ୍ବା ବୈଦ୍ୟ ନାମରେ ସୁପରିଚିତ। ପୂଜା ସମୟରେ ଏମାନେ ଭୂମି ଉପରେ ରଙ୍ଗିନ୍ ମୁରୁଜରେ

'ନାଗମଣ୍ଡଳ' ଅଙ୍କନ କରି ନାଗଦେବତାଙ୍କୁ ପ୍ରୀତ କରାଇବା ନିମନ୍ତେ ବିଭିନ୍ନ ପ୍ରକାର ଗୀତ ଗାନ କରିଥାଆନ୍ତି । ଏହା ବ୍ୟତୀତ ପୂଜାପୀଠ ନିକଟରେ ଥିବା କେତେକ ସର୍ପବିଳରୁ ମାଟି ଆଣି ଭକ୍ତମାନଙ୍କ ପ୍ରସାଦ ଭାବରେ ବଣ୍ଟନ କରିଥାଆନ୍ତି । ଏହା ଦ୍ୱାରା ଚର୍ମରୋଗ ଆରୋଗ୍ୟ ହେବା ସହିତ ନାରୀମାନଙ୍କର ବନ୍ଧ୍ୟାଦୋଷ ମଧ ଦୂର ହୋଇଥାଏ ବୋଲି ଜଣାଯାଏ ।

କର୍ଣ୍ଣାଟକର ଅନ୍ୟ କେତୋଟି ନାଗପୀଠ ମଧରେ ସୁଉଚ୍ଚ ପୁଷ୍ପଗିରି ପାହାଡ ଉପରେ ଥିବା 'ସ୍ୱାମୀ ସୁବ୍ରମନ୍ୟ' ମନ୍ଦିର ସ୍ୱନାମଧନ୍ୟ । ଏଠାରେ ମାଘମାସ ବା ଡିସେମ୍ବର ମାସରେ ଏକ ବାର୍ଷିକ ମେଳା ପାଳିତ ହୁଏ ଯେଉଁଠାରେ ବହୁ ଭକ୍ତଙ୍କର ସମାଗମ ହୁଏ । କର୍ଣ୍ଣାଟକର ଉତ୍ତରାଞ୍ଚଳରେ ଥିବା କୁମପେଟା ତାଲୁକର 'ନାଗ-ତୀର୍ଥ' ନାମକ ସ୍ଥାନରେ ଏକ ସୁବ୍ୟବସ୍ଥିତ ପୋଖରୀ ନିକଟ ଗୁମ୍ଫା ମନ୍ଦିରରେ ହଜାର ହଜାର ସଂଖ୍ୟକ ପଥରର ନାଗ ଦେବତା ପ୍ରତିମା ରହିଛି । ବାଙ୍ଗାଲୋର ନଗରର ୩୦ କି.ମି. ଦକ୍ଷିଣ-ପଶ୍ଚିମରେ ଥିବା ' ଆନିକଲ' ସହରର ଏକ ପୋଖରୀ ନିକଟରେ ଏକ ପବିତ୍ର ଉଦ୍ୟାନରେ ପୂର୍ବର କୋଡିଏ ଗୋଟି ସଂଗୃହୀତ 'ନାଗ-କଳସ' କୁ ସ୍ଥାପନ କରି ପୂଜାର୍ଚ୍ଚନା କରାଯାଉଛି ।

## ଆଦିବାସୀ ସମାଜରେ ନାଗପୂଜା

ଭାରତର ପ୍ରତ୍ୟେକ ପ୍ରଦେଶରେ ଆଦିବାସୀ ବାସ କରନ୍ତି ଏବଂ ଏମାନଙ୍କ ମଧରେ ବିଭିନ୍ନ ଭାବରେ ନାଗପୂଜା ପ୍ରଚଳିତ ଅଛି । ଏହା ମଧରେ ଓଡିଶାରେ ସର୍ବାଧିକ ଜାତିର ଆଦିବାସୀ ଦେଖାଯାଆନ୍ତି ଅର୍ଥାତ୍, ଏମାନଙ୍କ ସଂଖ୍ୟା ୬୨ । ବନ ଜଙ୍ଗଲ ନିବାସୀ ଏମାନେ ସର୍ବଦା ସର୍ପର ନିକଟତର ହୋଇଥାଆନ୍ତି । ଏଣୁ ସର୍ପ ଦଂଶନରୁ ରକ୍ଷା ପାଇବା ନିମନ୍ତେ ଏମାନେ ବିଭିନ୍ନ ଭାବରେ ସର୍ପପୂଜା କରିଥାଆନ୍ତି । ସେଥିମଧରୁ କେତୋଟି ପୂଜାର ଉଦାହରଣ ଏଠାରେ ପ୍ରଦତ୍ତ ହେଲା ।

ଓଡିଶାର କନ୍ଧ ଓ କୋହ୍ଲମାନଙ୍କ ସର୍ପଦେବତାଙ୍କ ନାମ 'ତାରା-ପେନୁ' । ଏହି ଦୁଇ ଗୋଷ୍ଠୀଙ୍କ ଦେବତା ଏକ ହେଲେହେଁ, ପୂଜା ପଦ୍ଧତିରେ ପାର୍ଥକ୍ୟ ଦେଖାଯାଏ ଏବଂ କୋହ୍ଲଙ୍କ ଏହି ସର୍ପପୂଜା ପଛରେ ଏକ କଥା ରହିଛି । ଏହା ହେଉଛି ; ଥରେ ଜଣେ କୋହ୍ଲ ନାଗ ପଞ୍ଚମୀ ଦିନ ଜମିରେ କାମ କରୁକରୁ ଏକ ନାଗସର୍ପକୁ ମାରିଦେଲା । ଏଥିରେ ମା' ନାଗୁଣୀ କ୍ରୋଧାନ୍ୱିତ ହୋଇ ରାତ୍ରିରେ କୋହ୍ଲର ଘରକୁ ଯାଇ ତାର ପରିବାରର ସମସ୍ତଙ୍କୁ ଦଂଶନ କଲା । କିନ୍ତୁ, ଅନ୍ୟ ଗ୍ରାମରେ ରହୁଥିବା କୋହ୍ଲର ଝିଅଟି ଏଥିରୁ ରକ୍ଷା ପାଇଯାଇଥିଲା । ଝିଅଟି ଏକଥା ଜାଣି ଭାରି ଦୁଃଖିତ

ହେଲା ଏବଂ ନାଗୁଣୀ ଖୋଜି ଖୋଜି ତାକୁ ମଧ ମାରିପାରେ, ଏଣୁ ସେ ଆଗରୁ ଜାଗ୍ରତ ହେଲା । ନାଗୁଣୀ ପାଇଁ ସେ ଦୁଧ, ମିଠା ଖାଦ୍ୟ ଓ ଫୁଲ ଯୋଗାଡି ରଖିଲା । ସତକୁ ସତ ନାଗୁଣୀ ଦିନେ ରାତିରେ ଆସି ତା ପାଖରେ ପହଞ୍ଚିଲା । ସେତିକିବେଳେ ଝିଅ ନାଗୁଣୀକୁ ସେସବୁ ଖାଇବାକୁ ଦେଇ ପୂଜା କଲା । ନାଗୁଣୀ ଏଥିରେ ସନ୍ତୋଷ ହୋଇ ଝିଅର ପରିବାରକୁ ବଞ୍ଚାଇଦେଲା । ସେହିଦିନଠାରୁ କୋହ୍ଲମାନେ ନାଗପଞ୍ଚମୀ ପାଳନ କରନ୍ତି ।

ଉତ୍ତରପଶ୍ଚିମ ଓଡିଶାର ଓରାଓଁ ଆଦିବାସୀଙ୍କ ସର୍ପଦେବତାର ନାମ 'କ୍ଷେତା' । ଏମାନେ କ୍ଷେତା ସର୍ପଦେବତାଙ୍କୁ ବଳୀ ଦେଇ ପୂଜା କରିବା ସହିତ ତାଙ୍କର ଗୁଣଗାନ କରି କରତାଳି ଦେଇ ଗୀତ ଗାଆନ୍ତି । ଏହି ଅଞ୍ଚଳର ହୋ ଓ ଭୂମିଜ ଆଦିବାସୀମାନେ ସେମାନଙ୍କ ପୁରୋହିତ 'ନୟା' ଦ୍ୱାରା ସର୍ପପୂଜା କରୁଥିବା ଜଣାଯାଏ । ଏହି ସମୟରେ ସେମାନେ ଘର ବାହାର ଗୋଟିଏ ସ୍ଥାନ ଲିପାପୋଛା କରି ଜଳପୂର୍ଣ୍ଣ କଳସ ରଖି ଝୁଣା, ଧୂପ ଓ ଦୀପ ଦେଇଥାଆନ୍ତି । ଏହି ସମୟରେ କୁକୁଡା, ବତକ, ଓ କେତେକ ସ୍ଥଳେ ଛେଳି ମଧ ବଳୀ ଦିଆଯାଇଥାଏ । ଓଡିଶାର ବିଭିନ୍ନ ଅଞ୍ଚଳରେ ବାସ କରୁଥିବା କନ୍ଧ, କୋୟା, ଗଦବା, ସାନ୍ତାଳ, ହୋ, ଗଣ୍ଡ ଇତ୍ୟାଦି ଆଦିବାସୀମାନେ ନିର୍ଦ୍ଦିଷ୍ଟ ତିଥିରେ ସର୍ପପୂଜା କରିବା ବ୍ୟତୀତ ଗୃହରେ କିମ୍ବା ଜମିରେ ସର୍ପଭୟ ଥିଲେ ନିଜ ନିଜ ଗୋଷ୍ଠୀର ଜାନୀ, ପେଢା ବା ପୁରୋହିତଙ୍କୁ ଡାକି ସର୍ପପୂଜା କରାଇଥାଆନ୍ତି । ପ୍ରତ୍ୟେକ ଆଦିବାସୀଙ୍କର ଏହି ପ୍ରକାର ପୂଜାରେ ବଳୀ ଏକ ଆବଶ୍ୟକୀୟ ନୀତି ପାଳିତ ହୋଇଥାଏ ।





କେନ୍ଦୁଝର, ଆସନପାଟରୁ ପ୍ରାପ୍ତ ସର୍ପଧାରୀ ନଟରାଜ ମୂର୍ତ୍ତି, ଆନୁମାନିକ ଖ୍ରୀ. ୪ର୍ଥ ଶତାବ୍ଦୀ, ଓଡିଶା ରାଜ୍ୟ ସଂଗ୍ରହାଳୟ ।



# କଳାତ୍ମକ ନାଗପୂଜା ସାମଗ୍ରୀ

ପ୍ରଚଳିତ ନାଗପୂଜାକୁ ନେଇ ସୃଷ୍ଟି ହୋଇଛି ଅନେକ କଳାତ୍ମକ ପୂଜା ସାମଗ୍ରୀ। ଏଥିମଧ୍ୟରୁ କେତେକ ପୂଜିତ ମୂର୍ତ୍ତି ଓ ଅନ୍ୟ କେତେକ ପୂଜାରେ ବ୍ୟବହାର ହେଉଥିବା ପଦାର୍ଥରେ ନାଗ ପିତୁଳା ସଂଯୋଜିତ ହୋଇଥାଏ। ନାଗପୂଜା ବ୍ୟତୀତ ଏହି ପୂଜାର କେତେକ ସାମଗ୍ରୀ ଅନ୍ୟ ପୂଜାରେ ମଧ୍ୟ ବ୍ୟବହୃତ ହୁଏ। ମାଟି, କାଠ, ପଥର ଓ ବିଭିନ୍ନ ଧାତୁରେ ନିର୍ମିତ ଏହି ପ୍ରକାର ପଦାର୍ଥ ବ୍ୟତୀତ ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ନାଗଚିତ୍ର ମଧ୍ୟ ଅଙ୍କିତ ହୋଇଥାଏ। ଏହାମଧ୍ୟରେ ବିହାରର ମଧୁବନୀ, ଗୁଜୁରାଟର ରଙ୍ଗୋଲି, ଓଡ଼ିଶାର ଚିତା, ଆଦିବାସୀ ଚିତ୍ର ମଧ୍ୟରେ ସଉରା, ଓ୍ୱାର୍ଲି, ପିଥୋରା ଇତ୍ୟାଦି ଜାତିମାନଙ୍କ ଦ୍ୱାରା ଅଙ୍କିତ ଚିତ୍ର ଗୁଡ଼ିକ ପ୍ରଧାନ। ନାଗପୂଜା ନିମନ୍ତେ ଗୁଜୁରାଟ ଓ ରାଜସ୍ଥାନର କୁମ୍ଭାରମାନଙ୍କ ପୋଡ଼ାମାଟି କୃତିଗୁଡ଼ିକ ଅନନ୍ୟ ଅଟେ। ଏହି ତୋରଣ ଯୁକ୍ତ ଆୟତାକାର ଫଳକଗୁଡ଼ିକରେ ଅତି ସୂକ୍ଷ୍ମ ଓ ସୁନ୍ଦର ମାଟି କାମ ହୋଇଥାଏ। ଏଥିରୁ କେତେକରେ ବିଭିନ୍ନ ନାଗଙ୍କ ପିତୁଳା ରହୁଥିବାବେଳେ ଅନ୍ୟ କେତେକରେ ନାଗବଂଶୀ ରାଜା ଓ କ୍ଷତ୍ରିୟଙ୍କ ମୂର୍ତ୍ତି ସହିତ ଅନନ୍ତ, ବାସୁକି, ତକ୍ଷକ, କର୍କୋଟକ ଭଳି ପୁରାଣ ବର୍ଣ୍ଣିତ ନାଗଙ୍କ ମୂର୍ତ୍ତି ସଂଯୋଜିତ ହୋଇଥାଏ।

ମନସା ପଞ୍ଚମୀ, ନାଗପୂଜା ନିମନ୍ତେ ବଙ୍ଗ ପ୍ରଦେଶରେ ତିଆରି ହେଉଥିବା 'ନାଗକଳସ' ଗୁଡ଼ିକ ଅତ୍ୟନ୍ତ ଆକର୍ଷଣୀୟ। ଗୋଟିଏ କଳସର

ଚିତ୍ର : ନାଗ ଓ ଦେବଦେବୀଯୁକ୍ତ ଧାତବ ଶିବଲିଙ୍ଗ, ତାମିଲନାଡୁ।


ରାଜସ୍ଥାନ, ନାଗ ଫଳକ

ଚତୁଃପାର୍ଶ୍ୱରେ ଜୀବନ୍ତ ସଦୃଶ ନାଗ ମୂର୍ତ୍ତିମାନ ସଂଯୋଜିତ ହୋଇଥାଏ। ବିହାର ଓ ମଧ୍ୟପ୍ରଦେଶର ଅନେକ ସ୍ଥାନରେ ନାଗପୂଜା ନିମନ୍ତେ ବାଉଁଶ ଝୁଡିରେ ଗୋବର ଲିପି ତା ଦେହରେ ଗୋବର ଓ ମାଟିର ନାଗ ପିତୁଳା ତିଆରି କରାଯାଇଥାଏ। ଏଗୁଡିକ ଶୁଖିବା ପରେ ଏହା ଉପରେ ଧଳାଖଡିର ଲେପଦେଇ ରଙ୍ଗ କରାଯାଏ। ଏହି ସୁନ୍ଦର ପାତ୍ରଗୁଡିକ ବ୍ରତଚାରିଣୀମାନେ ନିଜେ ତିଆରି କରିଥାଆନ୍ତି।

ଦକ୍ଷିଣ ଭାରତରେ ନାଗପୂଜା ନିମନ୍ତେ ପଥର ଓ ଧାତବ ମୂର୍ତ୍ତିମାନ ଅଧିକ ବ୍ୟବହାର ହୋଇଥାଏ। ପଥର ତିଆରି ନାଗ ଓ ନାଗନାଗୀ ମୂର୍ତ୍ତିଗୁଡିକ ବିଭିନ୍ନ ଭାବରେ ତିଆରି ହୋଇ, ଏକ ଉତ୍ସବରେ ଗ୍ରାମ ଉପକଣ୍ଠରେ ପ୍ରତିଷ୍ଠା କରାଯାଏ। ଶିବମନ୍ଦିର ଓ ନାଗପୂଜା ପୀଠମାନଙ୍କରେ ସମର୍ପଣ ବା ଦାନ ନିମନ୍ତେ ଲୋକେ ପିତଳ, ତମ୍ବା, ରୂପା ଓ କେତେକ ସ୍ଥଳେ ସୁବର୍ଣ୍ଣର ନାଗ ମୂର୍ତ୍ତିମାନ ତିଆରି କରାଇଥାଆନ୍ତି। ଏହା ବ୍ୟତୀତ କେତେକ ଭକ୍ତ ଶିବପୂଜା ସହିତ ନାଗପୂଜା କରିବା ବିଧେୟ ବୋଲି ମନେ କରନ୍ତି। ଏଥିନିମନ୍ତେ ବିଭିନ୍ନ ପ୍ରକାର ପଥର ଓ ଧାତୁରେ ଶିବଲିଙ୍ଗ ଓ ନାଗମୂର୍ତ୍ତି ଏକତ୍ର ତିଆରି ହୋଇଥାଏ। କେତେକ ସ୍ଥଳେ ଏଥିରେ ଅନ୍ୟ ଦେବତାଙ୍କ ମୂର୍ତ୍ତି ମଧ୍ୟ ସ୍ଥାନିତ ହୋଇଥାଏ। ଏହାବ୍ୟତୀତ କେତେକ ପୂଜାପାତ୍ର, ଦୀପ,ରୁଖା, ଆଳତି ଦାନୀ ସମେତ କେତେକ ବାଦ୍ୟଯନ୍ତ୍ର ଯଥା- ତୁରୀ, କାହାଳି ଇତ୍ୟାଦିରେ ନାଗ ମୂର୍ତ୍ତି ସଂଯୋଜିତ ହୋଇଥିବା ଦେଖାଯାଏ। ଗୃହ ସାଜସଜା ନିମନ୍ତେ କର୍ଣ୍ଣାଟକ, ତାମିଲନାଡୁ ଓ କେରଳର କାରିଗରମାନେ କାଳୀୟଦଳନ ଓ ବିଭିନ୍ନ ପ୍ରକାର ନାଗ ମୂର୍ତ୍ତିମାନ ତିଆରି କରିଥାଆନ୍ତି। ଉତ୍ତର ଭାରତର ମୁରାଦାବାଦରେ ମଧ୍ୟ ଏହି ପ୍ରକାର କେତେକ ପଦାର୍ଥ ତିଆରି ହୋଇଥାଏ। ଅର୍ଥାତ, ଭାରତୀୟ ହସ୍ତଶିଳ୍ପରେ ନାଗ ପ୍ରତିମା ଥିବା କୃତିଗୁଡିକ ଏକ ବଳିଷ୍ଠ ଧାରା ସୃଷ୍ଟି କରିଛି କହିଲେ ଅତ୍ୟୁକ୍ତି ହେବନାହିଁ।



# କଳା ଓ ସ୍ଥାପତ୍ୟରେ ନାଗ

ଧର୍ମ କଳାସୃଷ୍ଟିର ଏକ ମୁଖ୍ୟ ନିମିତ୍ତ ବା ମାଧମ ହୋଇଥିବାବେଳେ ଅଭିବ୍ୟକ୍ତି ଓ ଆନନ୍ଦ ନିମନ୍ତେ ମଧ କଳା ସୃଷ୍ଟି କରାଯାଇଥାଏ । ଏହି ପରିପ୍ରେକ୍ଷୀରେ ପ୍ରାଚୀନକାଳରେ ଜନଜାତିମାନେ ପୂଜା ନିମନ୍ତେ ପ୍ରଥମେ ସର୍ପ ବା ନାଗର ଚିତ୍ର ଓ ପରବର୍ତ୍ତୀ ପର୍ଯ୍ୟାୟରେ ପଥରରେ ମୂର୍ତିମାନ ନିର୍ମାଣ କରିଥିଲେ । ଏହାର ଉଦାହରଣ ଭାରତର ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳେ । ପ୍ରାଚୀନ କାଳର ନାଗ ଚିତ୍ରଗୁଡିକ ନଷ୍ଟ ହୋଇଯାଇଥିବା ବେଳେ ଭୁବନେଶ୍ୱର ନିକଟସ୍ଥ ପାଣ୍ଡଗାଁରେ ଏକ ଚଟକା ପଥର ଉପରେ ରୁକ୍ଷ ଶୈଳୀରେ ଖୋଦିତ ଏକ ସପ୍ତଫଣୀ ନାଗର ପ୍ରତିମା ରହିଛି । ପ୍ରାଚୀନ କଳାଶୈଳୀର ଏହି ମୂର୍ତିଟି ମୌର୍ଯ୍ୟଶାସନ ପୂର୍ବବର୍ତ୍ତୀ ଅର୍ଥାତ୍ ଖ୍ରୀ.ପୂ.୩ୟ ଶତାବ୍ଦୀର ହୋଇଥିବା ସମ୍ଭବ । ଗୌତମବୁଦ୍ଧ ନାଗମାନଙ୍କୁ ଦେବତା କିମ୍ବା ଉପଦେବତା ଭାବରେ ଗ୍ରହଣ କରିନଥିଲେ । ତେବେ, ଲୋକବିଶ୍ୱାସରେ ନାଗମାନଙ୍କୁ ଦେବତା ଭାବେ ଗ୍ରହଣ କରାଯାଇଥିବାରୁ ବୌଦ୍ଧ କଳା ଓ ସ୍ଥାପତ୍ୟରେ ଏହାର ପ୍ରଭାବ ପରିଲକ୍ଷିତ ହେଲା । ଫଳସ୍ୱରୂପ ପ୍ରାଚୀନ ବୌଦ୍ଧକୀର୍ତ୍ତି ସାଞ୍ଚିର ସ୍ତୁପ ଓ ଅନ୍ୟକେତେକ ବୌଦ୍ଧ ସ୍ଥାପତ୍ୟରେ ନାଗମୂର୍ତିମାନ ସ୍ଥାନ ପାଇଲା । ତେବେ,ଏଥିମଧ୍ୟରୁ ଅନେକ ମୂର୍ତିରେ ନାଗମାନଙ୍କ ସରୀସୃପ ରୂପ ହେଲେ ହେଁ ଏଥିରେ ପଞ୍ଚ କିମ୍ବା ସପ୍ତଫଣାର ପରିକଳ୍ପନା କରାଯାଇଛି । କେତେକ ଅଞ୍ଚଳରେ ଏକଫଣା ଥିବା ନାଗର ବାସ୍ତବ ରୂପକୁ ବିଭିନ୍ନ ଭଙ୍ଗୀରେ ପଥର ଉପରେ ଖୋଦନ

ଚିତ୍ର : ପାଣ୍ଡଗାଁର ବୃକ୍ଷମୂଳେ ପୂଜା ପାଉଥିବା ପ୍ରାଚୀନ ସର୍ପଦେବତାଙ୍କ ମୂର୍ତି ।

କରାଯାଇଛି । ଏହି ପ୍ରକାର ଏକକ ନାଗ, ଯୁଗଳ ନାଗ-ନାଗୀ ପ୍ରତିମା କିମ୍ବା ସରଳ ଭାବରେ ପାଞ୍ଚ କିମ୍ବା ସାତ ସର୍ପର ରୂପ ଗୋଟିଏ ପଥରରେ ଉତ୍କୀର୍ଣ୍ଣ ହୋଇଥାଏ । ଓଡିଶାର ପ୍ରାଚୀ ନଦୀ ଅବବାହିକା, କୁରାଙ୍ଗ ଶାସନର ପୋଖରୀ କୂଳରେ ଏହି ପ୍ରକାର ଗୋଟିଏ ରଚନା ଥିଲା ।

ଦ୍ୱିତୀୟ ପର୍ଯ୍ୟାୟରେ ନାଗ ସହିତ ଦେବତ୍ୱ ଆରୋପ କରିବାକୁ ଯାଇ ତାଙ୍କର ମନୁଷ୍ୟ ଶରୀରର ଦେବତା ଓ ତା'ର ଏକ ଅଂଶ ସ୍ୱରୂପ ପ୍ରଚ୍ଛଦରେ ନାଗର କୁଣ୍ଡଳୀ ଓ ପ୍ରସାରିତ ପଞ୍ଚ କିମ୍ବା ସପ୍ତଫଣା ମସ୍ତକ ଉପରେ ରହିଲା । ଏହି ପ୍ରକାର ରଚନା ଖ୍ରୀ.ପୂ. ୧ମ ଶତାବ୍ଦୀରୁ ସୃଷ୍ଟି ହୋଇଥିବା ପ୍ରମାଣ ମିଳେ । ଏଥିରେ ଉଭୟ ପୁରୁଷ ଓ ନାରୀ ପ୍ରତିମା ଦେଖାଯାଏ ।

ପୁରୁଷ ମୂର୍ତ୍ତିଗୁଡିକୁ ସାଧାରଣଭାବେ 'ନାଗରାଜ' କୁହାଯାଉଥିବାବେଳେ ନାରୀ ଓ ପୁରୁଷ ଯୁଗଳ ମୂର୍ତ୍ତିଗୁଡିକୁ 'ନାଗ-ନାଗୀ' ମୂର୍ତ୍ତି ବୋଲି କୁହାଯାଏ । ସମୟେ ସମୟେ ଏକ ପୁରୁଷ ନାଗ ସହିତ ଦୁଇ ନାଗୀ ମୂର୍ତ୍ତି ମଧ ଥାଏ । ଏହି ପ୍ରକାର ପ୍ରାଚୀନ ନାଗ, ନାଗୀ ପ୍ରତିମା ଭୁବନେଶ୍ୱର ନିକଟ ସୁନ୍ଦରପଦା ଗ୍ରାମରେ 'କାଳିସୁଆଣୀ' ନାମରେ ପୂଜା ପାଉଛନ୍ତି । ପ୍ରଥମେ ଏଠାରେ ନାଗରାଜାଙ୍କ ସହିତ ଦୁଇ ନାଗୀମୂର୍ତ୍ତି ଥିଲେ । ଏଥିମଧ୍ୟରୁ ଗୋଟିଏ ନାଗୀମୂର୍ତ୍ତି ଭାଙ୍ଗିପଡିଥିବାରୁ ବର୍ତ୍ତମାନ ଦୁଇମୂର୍ତ୍ତି ପୂଜା ପାଉଛନ୍ତି । ମନୁଷ୍ୟ ଉଚ୍ଚତାରୁ କିଞ୍ଚିତ କମ୍, ନାଗରାଜ ପାରମ୍ପାରିକ ପ୍ରାଚୀନ ଶୈଳୀରେ ମଣିଯୁକ୍ତ ପଗଡି, ଧୋତି ଓ ଉତ୍ତରୀୟ ପରିଧାନ କରିଥିବାବେଳେ ନାଗୀ ନିମ୍ନର ଲମ୍ବବସ୍ତ୍ରସହ ଦୀର୍ଘ ଉତ୍ତରୀୟ ଏକ ମର୍ଯ୍ୟାଦାପୂର୍ଣ୍ଣ ଭଙ୍ଗୀରେ ଧାରଣ କରିଛନ୍ତି ।



ଭୁବନେଶ୍ୱର ନିକଟସ୍ଥ କପିଳେଶ୍ୱର ଗ୍ରାମରେ ପୂଜା ପାଉଥିବା ନାଗନାଗୀ ମୂର୍ତ୍ତି, ଆନୁମାନିକ ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀ ।



ଖଣ୍ଡଗିରି, ଅନନ୍ତ ଗୁମ୍ଫାର ନାଗଯୁକ୍ତ ତୋରଣ, ଆନୁମାନିକ ଖ୍ରୀ.ପୂ. ୧ମ ଶତାବ୍ଦୀ।

ଏହି ଦୁଇ ମୂର୍ତ୍ତିର ପ୍ରଚ୍ଛଦରେ ସପ୍ତଫଣାଯୁକ୍ତ ନାଗ ରହିଛନ୍ତି। ପ୍ରାଚୀନ ଶୈଳୀରେ ନାଗନାଗୀ ପ୍ରତିମାମାନ ଦକ୍ଷିଣ ଭାରତ ତଥା ଉତ୍ତର ଭାରତରେ ମଧ୍ୟ ଦେଖିବାକୁ ମିଳେ। ପ୍ରାଚୀନକାଳରେ ଏହି ପ୍ରକାର ମୂର୍ତ୍ତି ସାଧାରଣତଃ ଦଣ୍ଡାୟମାନ ଭଙ୍ଗୀରେ ନିର୍ମିତ ହେଉଥିବାବେଳେ ମଧ୍ୟଯୁଗରେ ବିଭିନ୍ନ ଭଙ୍ଗୀରେ ଆସନ ଗ୍ରହଣ କରିଥିବା ମୂର୍ତ୍ତିର ସଂଖ୍ୟା ଅଧିକ।

ନାଗଦେବତାଙ୍କ ବ୍ୟତୀତ କେତେକ ନାଗବଂଶୀ ବ୍ୟକ୍ତିବିଶେଷଙ୍କ ମୂର୍ତ୍ତିକଳା ଓ ଚିତ୍ରକଳା ମଧ୍ୟ ରହିଛି। ଅଜନ୍ତା, ଏଲୋରାର ଏହି ପ୍ରକାର କୃତିଗୁଡିକ ଉଲ୍ଲେଖଯୋଗ୍ୟ। ଏହାମଧ୍ୟରେ ଅଜନ୍ତାର ଜଣେ ନାଗବଂଶୀ ରାଜା ଓ ତାଙ୍କ ରାଣୀଙ୍କ ଭାବପୂର୍ଣ୍ଣ ଭଙ୍ଗୀର କୃତିଟି ଗୁରୁତ୍ୱପୂର୍ଣ୍ଣ ଅଟେ। ବୌଦ୍ଧ କୀର୍ତ୍ତିମାନଙ୍କରେ ବୁଦ୍ଧ ତଥା ସଂଘ ସହିତ ଜଡିତ ଥିବା ବହୁ ନାଗବଂଶୀଙ୍କ ମୂର୍ତ୍ତି ଦେଖିବାକୁ ମିଳେ। ଏଗୁଡିକର କଳାଶୈଳୀରେ ବୈଚିତ୍ର୍ୟ ଓ ବିବିଧତା ପରିଲକ୍ଷିତ ଥାଏ।

ସୂଚନାଯୋଗ୍ୟ ଯେ, ଲୋକବିଶ୍ୱାସରେ ନାଗମାନେ ସୁରକ୍ଷାର ଦେବତା। କେତେକସ୍ଥଳେ ଏମାନେ ଧନସମ୍ପଦକୁ ଜଗି ରହୁଥିବା ବିଷୟ ଲୋକକଥା ଓ କିମ୍ବଦନ୍ତୀମାନଙ୍କରେ ରହିଛି। ଏହି ପରୀପ୍ରେକ୍ଷୀରେ ସ୍ଥାପତ୍ୟରେ ନାଗ ଦ୍ୱାରପାଳ ଓ ଦ୍ୱାରପାଳିକାଙ୍କ ମୂର୍ତ୍ତିମାନ ଦେଖିବାକୁ ମିଳେ। ଭୁବନେଶ୍ୱରସ୍ଥ ଖଣ୍ଡଗିରିର ଅନନ୍ତଗୁମ୍ଫା, ତୋରଣ ଉପରେ ଜୀବନ୍ତ ସଦୃଶ ଦୁଇ ସର୍ପଙ୍କ ମୂର୍ତ୍ତି ଉତ୍କୀର୍ଣ୍ଣ କରାଯାଇଛି। ଏଠାରେ ଏହା ସୁରକ୍ଷାର ପ୍ରତୀକ।

ଓଡିଶାରେ ପ୍ରାଚୀନ କାଳ ପରେ ଖ୍ରୀ. ୫ମ-୬ଷ୍ଠ ଶତାବ୍ଦୀରେ ଏକ ଭିନ୍ନ ପ୍ରକାରର ନାଗ ଦେବତା ମୂର୍ତ୍ତି ପରିକଳ୍ପନା କରାଯାଇଥିଲା । ଏଥିରେ ଦେବତାଙ୍କ କେବଳ କଟୀ ଠାରୁ ମସ୍ତକଯାଏଁ ରହୁଥିବାବେଳେ ମସ୍ତକଉପରେ ନାଗର ପ୍ରସାରିତ ଫଣାଗୁଡିକ ରହୁଥିଲା । ମୂର୍ତ୍ତିର ନିମ୍ନଭାଗର ଥିବା ଖିଲାଣକୁ ଏକ ପୀଠ ଉପରେ ସ୍ଥାପନ କରି ପୂଜାର୍ଚ୍ଚନା କରାଯାଉଥିଲା । ଏମାନେ ମସ୍ତକରେ ଜଟାମୁକୁଟ ଓ ଶରୀରରେ ବସ୍ତ୍ରାଳଙ୍କାର ପରିଧାନ କରିଥିବାବେଳେ ଦୁଇ ହସ୍ତରେ ବକ୍ଷ ନିକଟରେ ଏକ ଅମୃତ କଳସ ଧାରଣ କରିଥିବା ଦେଖାଯାଏ । ଏହି ପ୍ରକାର ରଚନା ଭୁବନେଶ୍ୱରର ସୁବର୍ଣ୍ଣଜଳେଶ୍ୱର ମନ୍ଦିର ପରିସର, ମୁକ୍ତେଶ୍ୱର ମନ୍ଦିର ପରିସର ଏବଂ ବାଣପୁର ନିକଟ ବଙ୍କାଡରେ ଦେଖିବାକୁ ମିଳେ । ଭୁବନେଶ୍ୱରର ଖ୍ରୀ. ୮ମ-୯ମ ଶତାବ୍ଦୀର ଚାମୁଣ୍ଡା ମନ୍ଦିର, ବୈତାଳ ଦେଉଳର ପ୍ରବେଶଦ୍ୱାର ଦୁଇପାର୍ଶ୍ୱରେ ନାଗ-ନାଗୀଙ୍କ ମୂର୍ତ୍ତି ରହିଛି । ମସ୍ତକ ଉପରେ ସର୍ପର ପ୍ରସାରିତ ଫଣାଥିବା ଏହି ଉପଦେବତାମାନେ ବକ୍ଷନିକଟରେ ଦୁଇହସ୍ତରେ ପୂର୍ଣ୍ଣକୁମ୍ଭ ବା ଅମୃତକଳସ ଧାରଣ କରିଛନ୍ତି । ଏହିପ୍ରକାର ନାଗନାଗୀ ଦ୍ୱାରପାଳ ମୂର୍ତ୍ତି ଓଡିଶାର ଅନ୍ୟ କେତେକ ମନ୍ଦିରରେ ମଧ ଦେଖିବାକୁ ମିଳେ । ଉତ୍ତର ଭାରତର ଅନେକ ପ୍ରାଚୀନ ଓ ମଧ୍ୟଯୁଗୀୟ ବୌଦ୍ଧ ସ୍ଥାପତ୍ୟର ପ୍ରବେଶ ଦ୍ୱାରର ଦୁଇପାର୍ଶ୍ୱରେ ମନୁଷ୍ୟ ଶରୀର, ଦ୍ୱାରପାଳ ମୂର୍ତ୍ତିର ମସ୍ତକ ଉପରେ ସର୍ପର ପଞ୍ଚ କିମ୍ବା ସପ୍ତଫଣା ଦେଖିବାକୁ ମିଳେ । ମନେହୁଏ ସେ ସମୟରେ ନାଗ ଭାବରେ ନାଗବଂଶୀ କ୍ଷତ୍ରୀୟ ଓ ଶୁଦ୍ରମାନଙ୍କୁ ଦ୍ୱାରପାଳଭାବେ ନିୟୋଜିତ କରାଯାଉଥିଲା ।





ମୟୂରଭଞ୍ଜ, ଖିଚିଙ୍ଗ୍‌ର ନାଗ-ନାଗୀ ପ୍ରତିମା, ଖ୍ରୀ. ୧୦ମ ଶତାବ୍ଦୀ ।

କେତେକସ୍ଥଳେ ନାଗଦେବତା ଓ ଉପଦେବତାମାନଙ୍କୁ ଅର୍ଦ୍ଧ ମନୁଷ୍ୟ ଓ ଅର୍ଦ୍ଧନାଗ ରୂପରେ ପରିକଳ୍ପନା କରାଯାଇଛି । ଏହିକ୍ଷେତ୍ରରେ ଉର୍ଦ୍ଧ୍ୱ ଅର୍ଦ୍ଧଭାଗ ମନୁଷ୍ୟ ଓ ନିମ୍ନ ଅର୍ଦ୍ଧଭାଗ ସର୍ପଶରୀର ହେବା ସହିତ ମସ୍ତକ ଉପରେ ସର୍ପର ପ୍ରସାରିତ ଫଣାଗୁଡିକ ରହିଥାଏ । ଏହି ପ୍ରକାର ରଚନା ଦକ୍ଷିଣଭାରତ ସମେତ ଓଡିଶାର ମନ୍ଦିର ଗାତ୍ରରେ ଦେଖାଯାଏ । ଭୁବନେଶ୍ୱରର ମୁକ୍ତେଶ୍ୱର, ରାଜାରାଣୀ, ବ୍ରହ୍ମେଶ୍ୱର ଓ ଲିଙ୍ଗରାଜ ମନ୍ଦିର ପରିସରରେ ଥିବା ପାର୍ବତୀ ମନ୍ଦିରର ଛୋଟବଡ ଉପସ୍ତମ୍ଭମାନଙ୍କରେ ଏହିପ୍ରକାର ନାଗନାଗୀ ପ୍ରତିମାଗୁଡିକ ସୁନ୍ଦରଭାବେ ଉତ୍କୀର୍ଣ୍ଣ ହୋଇଛି । କୋଣାର୍କର ସୂର୍ଯ୍ୟମନ୍ଦିର ଗାତ୍ରରେ ଏହିପରି ଯୁଗଳ ତଥା ତିନିଚାରି ନାଗନାଗୀ ଗୋଟିଏ ସ୍ତମ୍ଭରେ ବିଭିନ୍ନ ଛନ୍ଦମୟଭଙ୍ଗୀରେ ଥିବା ଦେଖାଯାଏ । କହିବା ବାହୁଲ୍ୟ ଯେ, ନାଗନାଗୀ ସ୍ତମ୍ଭମୂର୍ତ୍ତି ଓଡିଶାର ମନ୍ଦିର ଗାତ୍ରରେ ସର୍ବାଧିକ ଏବଂ ଏଗୁଡିକ ସୁନ୍ଦର ମଧ ।



କର୍ଣ୍ଣାଟକ, ନାଗବନ୍ଧ ମୂର୍ତ୍ତି,
ଆନୁମାନିକ ଖ୍ରୀ. ୧୦ମ ଶତାବ୍ଦୀ ।

ନାଗକଳାର ଅନ୍ୟ ଏକ ସୁନ୍ଦର ପରିକଳ୍ପନା ହେଉଛି 'ନାଗବନ୍ଧ' ଓ 'ନାଗଛନ୍ଦ' । ଏହା ଚିତ୍ର ଓ ମୂର୍ତ୍ତିକଳା, ଉଭୟରେ ଦେଖିବାକୁ ମିଳେ । ଏକ କିମ୍ବା ଏକାଧିକ ନାଗନାଗୀଙ୍କୁ ନେଇ ଏହି ପ୍ରକାର ରଚନା କରାଯାଇଥାଏ । ଓଡିଶାର କୋଣାର୍କ ସୂର୍ଯ୍ୟମନ୍ଦିରର ପ୍ରବେଶ ଦ୍ୱାରର ବନ୍ଧମାନଙ୍କରେ ଦୁଇ ନାଗନାଗୀଙ୍କୁ ନେଇ ନାଗବନ୍ଧ-ଦ୍ୱାର ସୃଷ୍ଟି କରାଯାଇଛି । ଏହିପ୍ରକାର ଧାର ଅନ୍ୟକେତେକ ମନ୍ଦିରରେ ମଧ ଦେଖିବାକୁ ମିଳେ । ଏହା ବ୍ୟତୀତ ତିନି କିମ୍ବା ଚାରି ନାଗନାଗୀଙ୍କ ବନ୍ଧ ରଚନା

ମଧ୍ୟ ଏହି ମନ୍ଦିରରେ ରହିଛି । ନାଗଛନ୍ଦ ରଚନାରେ ଗୋଟିଏ ନାଗକୁ ନେଇ ଏକ ବର୍ଗାକାର କିମ୍ବା ଆୟତାକାର କ୍ଷେତ୍ରମଧ୍ୟରେ ଛନ୍ଦ ସୃଷ୍ଟି କରାଯାଇଥାଏ । ଏହା ପଥରର ମୂର୍ତ୍ତିକଳା ସମେତ ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ପାରମ୍ପରିକ ଓ ଲୋକଚିତ୍ରକଳାରେ ମଧ୍ୟ ଦେଖାଯାଏ । କେତେକ ଅଞ୍ଚଳରେ ନାଗପୂଜାବେଳେ, ଲୋକେ ମୁରୁଜରେ ଏହି ପ୍ରକାର ଚିତ୍ର ଅଙ୍କନ କରିଥାଆନ୍ତି ।

କେତେକ ଗୁମ୍ଫା ଓ ମନ୍ଦିର ସ୍ଥାପତ୍ୟରେ ମଧ୍ୟ ନାଗ ଆକୃତିକୁ ଗୁରୁତ୍ୱ ଦିଆଯାଇଥାଏ । ଭୁବନେଶ୍ୱରର ଉଦୟଗିରି ଗୁମ୍ଫାରେ ସର୍ପଗୁମ୍ଫା ନାମକ ଏକ ଗୁମ୍ଫା ରହିଛି । ଏହାର ଉପର ଭାଗଟି ସର୍ପର ଫଣାଭଳି ଦେଖାଯାଏ । ବିଭିନ୍ନ ଧାତୁରେ ପୂଜା ଓ ଅଳଙ୍କରଣ ନିମନ୍ତେ ନାଗମୂର୍ତ୍ତିମାନ ନିର୍ମିତ ହୋଇଥାଏ । ଏହା ବ୍ୟତୀତ ପୂଜା ନିମନ୍ତେ ବିଭିନ୍ନ ଅଞ୍ଚଳରେ ମାଟି, କାଠ ଓ ଧାତୁରେ ନାଗକଳସ ଓ ନାଗଫଳକମାନ ପାରମ୍ପରିକ ଶିଳ୍ପୀମାନେ ତିଆରି କରିଥାଆନ୍ତି । ଏହି ପରିପ୍ରେକ୍ଷୀରେ ଦକ୍ଷିଣଭାରତ, ବଙ୍ଗଳା ଓ ରାଜସ୍ଥାନର କଳାକୃତିଗୁଡିକ ଉଲ୍ଲେଖଯୋଗ୍ୟ । ଏହି ଭାବରେ ଭାରତୀୟ କଳା ଓ ସଂସ୍କୃତିରେ ନାଗମାନଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।





ଲଳିତଗିରି, ବୌଦ୍ଧବିହାର ଗବାକ୍ଷରେ ନାଗଛନ୍ଦ, ଆନୁମାନିକ ଖ୍ରୀ. ୪ର୍ଥ ଶତାବ୍ଦୀ ।



# ଉପସଂହାର

ଭାରତୀୟ ଧର୍ମଧାରଣରେ କେତେକ ପଶୁ, ପକ୍ଷୀଙ୍କୁ ଦେବତା ଓ ଉପଦେବତାର ମାନ୍ୟତା ଦିଆଯାଇ ପୂଜା କରାଯାଏ । ତେବେ, ସର୍ପପୂଜାର ବ୍ୟାପକତା ଅନ୍ୟକ୍ଷେତ୍ରରେ ଦେଖାଯାଏ ନାହିଁ । ପ୍ରାଚୀନ କାଳରେ ଲୋକେ ସାଧାରଣତଃ ଉଭୟଗୁଣ ସମ୍ପନ୍ନ ଶକ୍ତିମାନଙ୍କୁ ଦେବତା ଭାବେ ଗ୍ରହଣ କରୁଥିଲେ । ଏହି ପରିପ୍ରେକ୍ଷୀରେ ନାଗ ପ୍ରତ୍ୟକ୍ଷରେ ମନୁଷ୍ୟର କ୍ଷତି କରୁଥିବାବେଳେ ପରୋକ୍ଷରେ ପୃଥିବୀ ପରିବେଶର ସନ୍ତୁଳନ ରକ୍ଷା କରି ପ୍ରାଣୀଜଗତର ମଙ୍ଗଳ କରିଥାଏ । ଏହା ବ୍ୟତୀତ କେତେକ ଦୁଃସାଧ ରୋଗ ନିମନ୍ତେ ସର୍ପର ବିଷ ଓ ମାଂସ ଆର୍ୟୁବେଦ ଔଷଧରେ ବ୍ୟବହାର କରାଯାଏ । କେଉଁ ଆଦିମକାଳରୁ ସର୍ପସହିତ ମନୁଷ୍ୟ ସମାନ୍ତର ଭାବରେ ଯେପରି ତିଷ୍ଠି ରହିଛି, ଏମାନଙ୍କ ପ୍ରତ୍ୟକ୍ଷ ଓ ପ୍ରତୀକାତ୍ମକ ସମ୍ପର୍କକୁ ନେଇ ଗଢି ଉଠିଥିବା ସମାଜ, ଧର୍ମଧାରଣା, କଳା, ସ୍ଥାପତ୍ୟ ଓ ସାହିତ୍ୟ ସେପରି ଦେଶର କୋଣ ଅନୁକୋଣରେ ଆଚ୍ଛାଦିତ ହୋଇ ରହିଛି ।



# ଗ୍ରନ୍ଥସୂଚୀ


୧. James Fergusson, *Tree and Serpent Worship*, Reprint, Delhi, 1971.

୨. J.P. Vogel, *Indian Serpent Lore*, London, 1926.

୩. H. Zimmer, *Myths and Symbols in Indian Art and Civilization*, Reprint, Delhi, 1962.

୪. Charles Louis Fabri, *History of the Art of Orissa*, New Delh 1974.

୫. T.A. Gopinath Rao, *Elements of Hindu Iconography*, Vol-II, Part-II, Second Edition, Varanasi, 1971.

୬. J.N. Banearjea, *Development of Hindu Iconography*, Third Edition, Delhi, 1974.

୭. B.C. Sinha, *Serpent Worship in Ancient India*, New Delh 1979.

୮. K.C. Panigrahi, *Archaeological Remains at Bhubaneswa* Calcutta, 1961.

୯. Susil Chandra De, "Three ancient Naga images fro Bhubaneswar and Naga Cult in Orissa", *OHRJ*, Vol-III, No. April-1954, pp. 1-5.

୧୦. T.E. Donaldson, *Hindu Temple Art of Orissa*, Vol.III, Leide 1987.

୧୧. Sadhu Charan Panda, *Naga Cult in Orissa*, Delhi, 1986.

୧୨. Sasanka Sekhar Panda, "Nagas in the sculptural decoration of early west Orissan Temples", *OHRJ*, Vol. XLVII, No.1.

୧୩. ସତ୍ୟନାରାୟଣ ରାଜଗୁରୁ, ନାଗ ଇତିହାସ,(ପ୍ରଥମ ଖଣ୍ଡ), କଟକ, ୧୯୫୮ ।

୧୪. ଶାନ୍ତା ରାମେଶ୍ୱର ରାଓ, ମନସା ଦେବୀ, (ଓଡ଼ିଆ ଅନୁବାଦ), ଭୁବନେଶ୍ୱର, ୧୯୯୮ ।

୧୫. ଶାନ୍ତା ରାମେଶ୍ୱର ରାଓ, ଆସ୍ତିକ ଓ ଜନ୍ମେଜୟ ,(ଓଡ଼ିଆ ଅନୁବାଦ), ଭୁବନେଶ୍ୱର, ୧୯

୧୬. ଦୁର୍ଗାଚରଣ ପଣ୍ଡା, କଳିଙ୍ଗର ମନ୍ଦିର ଗାତ୍ରରେ ହିନ୍ଦୁ ଦେବାଦେବୀ, ଭୁବନେଶ୍ୱର, ୨୦୦

୧୭. ଦୁର୍ଗାଚରଣ ପଣ୍ଡା, "ନାଗପୂଜା ପରମ୍ପରା ଓ ଉତ୍କଳୀୟ ମୂର୍ତ୍ତିକଳାରେ ନାଗନାଗୀ", ଝଂ ୪୭ଶ ବର୍ଷ, ୨ୟ ସଂଖ୍ୟା, ମଇ- ୧୯୯୫ ।

୧୮. ଦୁର୍ଗାଚରଣ ପଣ୍ଡା, "ନାଗନାଗୀ କଥା", ପୌରୁଷ, ୪୩ତମ ବର୍ଷ, ୪ର୍ଥ ସଂଖ୍ୟା, ଅକ୍ଟୋବର ୨୦୦୯ ।






## ଦୁର୍ଗାଚରଣ ପଣ୍ଡା

ଜନ୍ମ : ୨୧.୦୨.୧୯୪୨, ଛତ୍ରପୁର, ଗଞ୍ଜାମ

ଛତ୍ରପୁର, ଅନସ୍ଲୋ ଇନ୍‌ଷ୍ଟିଚ୍ୟୁସନରେ ଶିକ୍ଷା ସମାପ୍ତି ପରେ ହାଇଦ୍ରାବାଦ କଳା ବିଦ୍ୟାଳୟରେ ଚାରୁକଳା ଓ ଆଲୋକଚିତ୍ରରେ ପ୍ରଶିକ୍ଷଣ ଲାଭ । ୧୯୬୧ ମସିହାରେ ରାଜ୍ୟ ସଂଗ୍ରହାଳୟ ଓ ପ୍ରତ୍ନତତ୍ତ୍ୱ ବିଭାଗରେ ଜଣେ ଶିଳ୍ପୀ ଭାବେ ଅବସ୍ଥାପିତ । ଜାତୀୟ ସଂଗ୍ରହାଳୟ ନୂଆଦିଲ୍ଲୀ ଓ ଭାରତୀୟ ପ୍ରତ୍ନତତ୍ତ୍ୱ ସଂସ୍ଥାରେ ସଂଗ୍ରହାଳୟ ପଦ୍ଧତି ଓ ପ୍ରତ୍ନତାତ୍ତ୍ୱିକ କାର୍ଯ୍ୟଧାରାରେ ପ୍ରଶିକ୍ଷଣ ଲାଭ । ୨୦୦୦ ମସିହାରେ ଅବସର ଗ୍ରହଣ ।

ଜଣେ ସୁପରିଚିତ ଚିତ୍ରଶିଳ୍ପୀ ଭାବେ ବିଭିନ୍ନ ପ୍ରାଦେଶିକ ଓ ଜାତୀୟ ଚିତ୍ର ପ୍ରଦର୍ଶନୀ ଓ ଚିତ୍ର ଶିବିରମାନଙ୍କରେ ଯୋଗଦାନ । ଓଡ଼ିଶା ଲଳିତକଳା ଏକାଡେମୀ ସମେତ ବିଭିନ୍ନ ପ୍ରାଦେଶିକ ଓ ଜାତୀୟ ଚିତ୍ରସଂସ୍ଥା ଓ ସାଂସ୍କୃତିକ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ମାନିତ ।

ଗତ କିଛି ବର୍ଷ ଧରି କଳା ଇତିହାସ ଓ ପ୍ରତ୍ନତତ୍ତ୍ୱ ଉପରେ ଗବେଷଣାରତ । ଓଡ଼ିଶା ତଥା ଓଡ଼ିଶା ବାହାର ବିଭିନ୍ନ ପତ୍ରପତ୍ରିକାରେ ବହୁ ଗବେଷଣାତ୍ମକ ଓ ଲୋକପ୍ରିୟ ପ୍ରବନ୍ଧ ପ୍ରକାଶିତ । ପ୍ରକାଶିତ ପୁସ୍ତକ: କଳିଙ୍ଗର ମନ୍ଦିର ସ୍ଥାପତ୍ୟ, ଭାରତୀୟ ସଂସ୍କୃତି ଓ ମୂର୍ତ୍ତିକଳାରେ ହିନ୍ଦୁ ଦେବଦେବୀ, ଓଡ଼ିଶାର ମନ୍ଦିରଗାତ୍ରରେ ଦେବଦେବୀ ମୂର୍ତ୍ତି, ଓଡ଼ିଶା ମନ୍ଦିରଗାତ୍ରରେ ମଂଡ଼ନକୃତି, ଓଡ଼ିଶାରେ ବୁଦ୍ଧଜନ୍ମର ପ୍ରାସଙ୍ଗିକତା ଓ ପ୍ରସ୍ତୁତିପଥେ : ଭାରତୀୟ କଳା ଓ ସଂସ୍କୃତି ଉପରେ ଅନ୍ୟ କେତେକ ପୁସ୍ତକ ।

ଭାରତୀୟ କଳା ଇତିହାସ କଂଗ୍ରେସ, ଗୌହାଟୀ ; ଇନ୍‌ଟାକ, ନୂଆଦିଲ୍ଲୀ : ଓଡ଼ିଆ ଗବେଷଣା ପରିଷଦ, କଟକ ; କେଦାରନାଥ ଗବେଷଣା ପ୍ରତିଷ୍ଠାନ, ଆଡ୍‌ଭାନସ୍‌ଡ ସେଣ୍ଟର ଫର୍ ଇନ୍‌ଡ଼ୋଲୋଜିକାଲ୍ ଷ୍ଟଡିଜ୍ ଓ ଉତ୍କଳ ସମ୍ମିଳନୀ, ଭୁବନେଶ୍ୱର ଭଳି କେତେକ ଗବେଷଣା ଓ ସାଂସ୍କୃତିକ ଅନୁଷ୍ଠାନ ଆଜୀବନ ସଦସ୍ୟ ।